ପ୍ରକାଶକ : ଶ୍ରୀ ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ମଦନମୋହନ ପ୍ରିଣ୍ଟର୍ସ, କଟକ-୯

ପ୍ରଥମ ସଂସ୍କରଣ : ଡିସେମ୍ବର ୨୫, ୧୯୮୭

ମୂଲ୍ୟ : ୬୮୦୦

ଉତ୍ସର୍ଗ

ଗ୍ରନ୍ଥମନ୍ଦିରର ପ୍ରତିଷ୍ଠାତା
ପରଲୋକଗତ ଶ୍ରୀଧର ମହାପାତ୍ରଙ୍କ
ସ୍ମୃତିପୂଜାରେ ନିବେଦିତ

ଗୋପାଳ ଛୋଟରାୟ

# ଚରିତ୍ର

ପୁରୁଷ :

ମଦନ—ଉଚ୍ଚଶିକ୍ଷିତ ଯୁବକ
ଅନନ୍ତ—ଉଚ୍ଚଶିକ୍ଷିତ ଯୁବକ
ଉପେନ୍ଦ୍ର—ଅବସରପ୍ରାପ୍ତ ଉଚ୍ଚକର୍ମଚାରୀ
ଗଣେଶ—ଯୁବକ—କାରଖାନା ମଜଦୁର
ମଲୁଆ—ଯୁବକ—କାରଖାନା ମଜଦୁର
ଜଗୁ—ସୁଷ୍ଠୁବପୁ ଯୁବକ—କାରଖାନା ସର୍ଦ୍ଦାର
ମେନେଜର—ଥିଏଟର ମେନେଜର
ତ୍ରିପାଠୀ ଓ ବସନ୍ତ—ସାମ୍ବାଦିକ
ମଧୁ—କାଗଜବେଚା
କନଷ୍ଟେବଲ୍
ବ୍ଲକରପିଲା

ସ୍ତ୍ରୀ :

କୁମୀ—ଭିକ୍ଷାର୍ଥିନୀ ଦଶ-ଏଗାର ବର୍ଷର ଏକ ବାଳିକା
ଶୋଭା—ଭିକ୍ଷାର୍ଥିନୀ ଯୁବତୀ
ମାଧବୀ—ଉଚ୍ଚଶିକ୍ଷିତା ମାର୍ଜିତରୁଚିସମ୍ପନ୍ନା ଅବିବାହିତା
ଯୁବତୀ—ଉପେନ୍ଦ୍ରଙ୍କ କନ୍ୟା

ଗୋଟିଏ ନାଟକର ମୁଖ୍ୟ ଚରିତ୍ର ହେଲ ସେଇ ନାଟକର ଉପଜୀବ୍ୟ—ଅବଲମ୍ବନ, ଯାହା ଉପରେ ନାଟକର ସାଫଲ୍ୟ ନିର୍ଭରଶୀଳ । ଧରିନିଅଯାଉ ଏ ଚରିତ୍ରଟି ହେଉଛି ଗୋଟିଏ ଦୁଃଖିନୀ ନାରୀ ଚରିତ୍ର । ଲେଖକଙ୍କ ଲେଖନୀ ସ୍ପର୍ଶରେ ଏ ଚରିତ୍ରଟି ଦର୍ଶକସ୍ୱା ଓ ସମସ୍ତଙ୍କର କରୁଣାର ପାତ୍ରୀ ହୋଇଛି । ତା'ପାଇଁ ସମସ୍ତଙ୍କ ପ୍ରାଣ ହୋଇ ଉଠୁଛି ଦରଦୀ—ସମ୍ବେଦନଶୀଳ । ଏଇ ଚରିତ୍ରଟିର ଉପାଖ୍ୟାନ ହିଁ ନାଟକଟିକୁ ଶ୍ରୀମଣ୍ଡିତ କରିଛି । ନାଟକର ଚରମ ସଫଳତାରେ ଦର୍ଶକ, ପାଠକ, କଳାକାର ସମସ୍ତେ ତୃପ୍ତ—ସମସ୍ତେ ମୁଗ୍ଧ । ନାଟ୍ୟକାର ପାଉଛନ୍ତି ଯଶ ମାନ ଅର୍ଥ, ସବୁକିଛୁ । କିନ୍ତୁ ସେଇ ଅଭାଗିନୀ ଚରିତ୍ରଟି ? ଯିଏ ଯଦି ଲେଖକଙ୍କ କଳ୍ପନାର ଚରିତ୍ର ନ ହୋଇ ଏକ ଜୀବନ୍ତ ଚରିତ୍ର ହୋଇଥାଏ—ତେବେ ସେ କ'ଣ ପାଉଛି ?

ଅଲମଚନ୍ଦବଜାର
କଟକ-୨
ଡିସେମ୍ବର, ୧୯-୭

ଗୋପାଳ ଛୋଟରାୟ

# ଦୃଶ୍ୟ—ଏକ

[କଟକ ସହରର ଏକ ଅଖ୍ୟାତ ଗଳିରେ ଏକ ଅପାର୍ଟ୍‌ମେଣ୍ଟ ବ୍ଲକଘରର ଗୋଟିଏ କୋଠରି । କୋଠରିଟି ଏହି ନାଟକର ନାୟକ ମଦନର ବାସସ୍ଥଳୀ । ଗୋଟିଏ ଅତି ସାଧାରଣ ଟେବୁଲ, ଟେବୁଲ ଉପରେ କିଛି ବହି ଓ କାଗଜ ଓ ଦୁଇଟି ଅତି ସାଧାରଣ ଚେୟାର କୋଠରିଟି ଭିତରେ ଦେଖିବାକୁ ମିଳେ । ସମୟ—ପୂର୍ବାହ୍ଣ ।

ଦୃଶ୍ୟ ଆରମ୍ଭରେ ଦେଖାଗଲା ଅନନ୍ତ ଗୋଟିଏ ଚେୟାର ଉପରେ ବସିଛି । ମଦନ ଚିନ୍ତିତ ମନରେ ପଦଚାରଣ କରୁଛି । ସେ ସାଧାରଣ ଢିଲା ପାଇଜାମା ଓ କୁର୍ତ୍ତା ପିନ୍ଧିଛି ।]

ମଦନ : କହ ମୁଁ ଜିବ କାହିଁକି ?

ଅନନ୍ତ : ସେ କଥା କି ମୁଁ ତୋତେ ବୁଝେଇବ ?

ମଦନ : ବୁଝେଇବା ଦରକାର ନାହିଁ—ସିଧାସଳଖ ଉତ୍ତର ଦେ ।

ଅନନ୍ତ : ଏ ପ୍ରଶ୍ନର କିଛି ସିଧାସଳଖ ଉତ୍ତର ନାହିଁ ।

ମଦନ : ତା'ହେଲେ ଏ ସମସ୍ୟାର କୌଣସି ସମାଧାନ ନାହିଁ ।

ଅନନ୍ତ : (ଟିକିଏ ରହି) ସିନସିଜିମ୍ ଶବ୍ଦଟାର ଠିକ୍ ଓଡ଼ିଆ ଅର୍ଥଟା କ'ଣ ମତେ କହତ !

ମଦନ : ଶବ୍ଦଟାର ଇଂରାଜୀ ଅର୍ଥ ମୁଁ ବୁଝେ—ତୁ ବି ବୁଝୁ । ତୋର ଯାହା କହିବାର ଅଛି କହ ।

ଅନନ୍ତ : ଗ୍ରୀସ୍‌ର ଦାର୍ଶନିକ ଆଣ୍ଟିସ୍ଥେନିସ୍ ଏହି ସ୍ୱନାମେ ନୈରାଶ୍ୟବାଦ ସିନସିଜିମ୍‌କୁ ଧର୍ମ, କଳାକାର, ଜ୍ଞାନୀ ଓ ଆମୋଦପ୍ରିୟ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ପ୍ରଚଳନ କରିଥିଲେ । କାରଣ ତାଙ୍କ ମତରେ ଏମାନେ ଥିଲେ ସମାଜର ଘୃଣାର ପାତ୍ର ।

ମଦନ : ଏ ସବୁ ତୁ ମତେ କାହିଁକି କହୁଛୁ ?

ଅନନ୍ତ : ଶୁଣ୍—ଶୁଣ୍...ଆମେ ଏମିତି ସାଧାରଣ କଥାବାର୍ତ୍ତା କଲାବେଳେ, ଏଭଳି ଧାମି ଧାମି—କଡ଼ା କଡ଼ା ଆଉ ରଙ୍ଗ ତାତଲାଭଳି କଥା କହିବାର ସୁଯୋଗ ପ୍ରାପ୍ତ ଅନେକ ନ ଥାଏ । ଏବେ ମତେ କହିବାକୁ ଟିକେ ସୁଯୋଗ ମିଳିଚି—ମତେ କହିବାକୁ ଭଲଲାଗୁଚି—ମୁଁ କହୁଚି । ତୁ ରାଗୁଚୁ କାହିଁକି ?

ମଦନ : (ଟିକିଏ ହସି) ରାଗୁଛି ? କେବେ କ'ଣ ଏମିତି ରାଗନ୍ତି ?

ଅନନ୍ତ : ଅବଶ୍ୟ ତମ ଜାତିଟା ବା ତମ ଶ୍ରେଣୀଟା, ଅତି ସାଧାରଣ ଅବସ୍ଥାରେ ଏମିତି ରାଗ ତମ୍ ତମ୍ ଦେଖାଯାଏ । କିଛି କାରଣ ଥାଉ ବା ନଥାଉ, ମିଛଟାରେ ଏମିତି ସିରସ୍ସ ହୋଇପଡ଼େ ଯେ, ସେଥିରେ ତମର ପ୍ରକୃତ ସ୍ୱରର ପ୍ରକାର ପ୍ରକାର କ'ଣ, ତା' ଦେଖିବାର ଇଚ୍ଛା ତ ଦୂରର କଥା, ସାହସ ଭରସା ବି କୁଆଡ଼େ ହଜିଯାଏ ।

ମଦନ : ତୁଯା ହୀ କହିଲୁ, ସେ କଥା ତୁ ନିଜେ ବୁଝିପାରିଲୁ ?

ଅନନ୍ତ : ମାନେ ? ମୋ କଥାଟା ତୋର ଅବୋଧ୍ୟ ହୋଇଗଲା ?

ମଦନ : ତୁ କାହିଁକି ଯେ ଏମିତି ବଙ୍କେଇ ବାଙ୍କେଇ କଥା କହୁଚୁ......

ଅନନ୍ତ : ଫାଜିଲାମି ବାହାର କରୁଚୁ ! ବ୍ଲଫ୍ ମାରୁଚୁ ? ଏଇ ବଙ୍କାବଙ୍କି କଥା ଆମକୁ କିଏ ଶିଖାଇଲା ? ତମେ—ତମେ ବାମପନ୍ଥୀ ଦଳଟା । ବାମ ମାନେ ଆମେ ବୁଝୁଁ—ବଙ୍କା ଅର୍ଥାତ୍ ମୋଡ଼ । ଡାହାଣ ମାନେ ସିଧା—ଠିକ୍ । ଏଇ "ମୋଡ଼" ଶବ୍ଦଟାକୁ ଆମ ସାହିତ୍ୟ ଭିତରକୁ ଆଣିଲା କିଏ ? ତମର ବାମପନ୍ଥୀ ସାମ୍ୟବାଦୀ କବି ସଚ୍ଚି ରାଉତରାୟ । ଏ ଶତାବ୍ଦୀର ଚତୁର୍ଥ ଦଶକରେ ସେ ବାମପନ୍ଥୀ ହୋଇଗଲେ । ପ୍ରେୟସୀଙ୍କ ସହିତ ଆଉ ସମ୍ପର୍କ ରହିବା କଥା ନୁହେଁ । ସେଥିପାଇଁ—

"ସୁକୋମଳ ପଥ ପାସେ ଥୋଇ ଲଘୁଚରଣ
ତା'ରେ ଅଙ୍କ ମୋ କୁଟୀରେ କରିବ ମୁଁ ବରଣ
ଜାଣ ଫୁଲେ ରଚ ମାଳା, ଭରି ଦେବ ତା'ର ଥାଳା

ଅରେ ନବଯୌବନ ଦଇପାଏ ମରଣ
ତାହାକୁ କଣ୍ଠରେ ଆଜ କରିବ ମୁଁ ବରଣ''…

ଏଇ କବିତାର ପରଦା କବିଙ୍କ ଜୀବନରେ ଆସିଲା ବାମପନ୍ଥୀ ମୋଡ଼ ଆଉ ସେଇ ମୋଡ଼ ପ୍ରକାଶ ପାଇଲା ତାଙ୍କ କବିତାରେ ।

ମଦନ : (ହସୁଥାଏ) କୋଉ କବିତା ?

ଅନନ୍ତ : ସବୁଜ ଯୁଗର ଦରଦୀ ପ୍ରେମିକ କବି ସାମ୍ୟବାଦୀ ପାଲଟିଯାଇ ତାଙ୍କର କବିତା ''ଧୂଳିପଥ''ରେ ଲେଖିଲେ—

''ତମପାଇଁ ସତି ସାଇତା ସ୍ନେହିତ ଫଗୁଣର ମଧୁ ଫୁଲହାର
ମୋ ପାଇଁ ରହିଛି କଲପାଣି ଅଛି ଦୀର୍ଘ ଜୀବନ ଭାରିଭାର ।
ମୋତେ ତ ଡାକୁଛି ଦଳିତ-ଜୀବନ ଲଜ୍ଜିତ କଥାକୁ ମୁଁ ଦେଖିବ
କୋଉଠି ଖଣିର କୁଲି ଶ୍ରମିକର ଝରଇ ଲୋତକ କି ଭୁଲିବାର ?
ମୋ' ମୁଣ୍ଡେ ଘୂରୁଛି ଦାଆ ଓ ହାତୁଡ଼ି ଭୁଖା ମାରେ ମତେ ମୂକ ଛବି
ଧରଣୀରେ ଯେତେ ଦୀନ ଓ ଦରିଦ୍ର ମୁହିଁ ପରା ତା'ର ସଖା କବି ।
ଦଳିତ ଫୁଲର ଡାକ ସେ ଶୁଣିଛି ଅଶ୍ରୁତ ଜୀବନ ସ୍ନେହେ ଯା'ରେ
ସେ'କି ପୁଣି ତବ ବକ୍ଷ ଅଞ୍ଚଳେ ଚପଳ ବୃନ୍ତ ଆସିପାରେ ?
ତେଣୁ ଆଜି ଏଇ ମୋଡ଼ ପାଖେ ରହି ନେଲିଣି ମାଗୁଛି ବିଦାୟରେ
ତୁମେ ଯାଅ ଚଳି ଭୁଲି ପଥେ, ମତେ ବୁଲିବାକୁ ଦିଅ ମୋ ପଥରେ ।''

ଏତକ କହି ସେ ତାଙ୍କ ପ୍ରେୟସୀଙ୍କୁ ବିଧାଦାତ୍ରୀ ଦେଖେଇଦେଇ ନିଜେ ରାସ୍ତାର ମୋଡ଼ ପାଖରୁ ବାଙ୍କେଇ ଗଲେ— turned left…କାରଣ ତାଙ୍କର ଏଇ ଯୋଉ ପ୍ରିୟା, ସେ ଜଣେ ପୁଞ୍ଜିବାଦୀ ପ୍ରେୟସୀ ହୋଇ ପାରନ୍ତି; କିନ୍ତୁ ଜଣେ କମ୍ରେଡ୍ ହୋଇପାରିବେ ନାହିଁ ।

ମଦନ : ଦଳିତ ଶ୍ରେଣୀର ସପକ୍ଷ ପାଇଁ ଭଲ ତ ଏକ ପ୍ରକାର କବିତା ।

ଅନନ୍ତ : ମନାଡ଼ିକୁଛ ତ ! କବି ବଡ଼ ହେଇହେଇ ଯାଉଛନ୍ତି ଓଡ଼ିଆ ବାସ୍ତବ କବିତାର ଜନ୍ମଦାତା । କିନ୍ତୁ ସତ, ତା'ପୂର୍ବରୁ ଆମ କବିତା ଥିଲା ।

ଲଳିତ-ଚଳିତ ନୁହେଁ । ଅମ ସିଧା ରାସ୍ତାରେ ଯେତେ ସବୁ ବଙ୍କା ତେଢ଼ା ବାଟ ସୃଷ୍ଟି କର ତମେମାନେ ମତେ ସ୍ୱର୍ଜ କରବ ଯେ ମୁଁ ବଙ୍କେଇ ବାଙ୍କେଇ କଥା କହୁଛ ।

ମଦନ : ତୁମ ହେଲ ଭଲ, ଏବେ ତୋ ସିଧା ରାସ୍ତାକୁ ଆ—ତୋ ସିଧା କଥାଟା କହ ।

ଅନନ୍ତ : ସିଧା କଥା ହେଲ, ତୁ ଯୋଉ ମନ୍ତ୍ରୀଙ୍କ ପାଖକୁ ଯିବାପାଇଁ ମୁଁ ତୋତେ କହୁଚ, ଯେ ମନ୍ତ୍ରୀ ମହାଶୟ ଗାଁର ଦାର୍ଶନିକ ଅର୍ଣ୍ଣି ହେନେସ୍‌ଙ୍କ ଦୃଷ୍ଟି ଧନୀ ନୁହନ୍ତି କି ଚଳାଚାର ନୁହନ୍ତି, କି ଅମୋଦପ୍ରିୟ ନୁହନ୍ତି କି ବଜ୍ଜର୍ନ… ମୂଳରୁ ଖରା କି ନୁହନ୍ତି ତ ଜଣାନାହିଁ—କେଉଁନ ଯାଏ କଥା ଯାଉଚି ନାହିଁକି ? କାରଣ ସେ ନଶେ ଭଦ୍ରଲୋକ ।

ମଦନ : ତୁ…ଜୋକ୍ କରୁନୁ ତ ?

ଅନନ୍ତ : ତୁ ଭାବପାରୁଚୁ ମଦନ ଏ କଥାରେ ମୁଁ ଜୋକ୍ କରିବ ?

ମଦନ : (ଚୌକି ଉପରେ ବସି) ହୁଁ…ତୁ ତେବେ କହୁଚୁ ମନ୍ତ୍ରୀଙ୍କ ପାଖକୁ ମୁଁ ଯିବ ?

ଅନନ୍ତ : ଏତେ କଥା ପରେ ତୁ ସତ ଏମିତ ଗୋଟେ ନିର୍ବୋଧ ପ୍ରଶ୍ନ ପଚାରୁ, ମୋର ଆଉ କୁହ କ'ଣ ? ଏ ପ୍ରଶ୍ନର ଉତ୍ତର ମୋ ପାଖରେ ନାହିଁ ।

ମଦନ : ମାନିଲି—ମୁଁ ମନ୍ତ୍ରୀଙ୍କ ପାଖକୁ ଯିବି—ତା' ପରେ ?

ଅନନ୍ତ : ମୁଁ ଏବେଠୁଁ କହିରଖୁଚି, ତୁ ମନ୍ତ୍ରୀଙ୍କ ପାଖକୁ ଯିବା ପଥଟା ମୁଁ ପରିଷ୍କାର କରିଦେଇ ଦେବ । ଅବଶ୍ୟ ଏଥିପାଇଁ ଯେପରି ତୋତେ ପାଞ୍ଚ ସାତ ମିନିଟ୍‌ଠାରୁ ପାଞ୍ଚ ସାତ ଘଣ୍ଟା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିପାରେ । ଏଇଟା କିନ୍ତୁ ମନ୍ତ୍ରୀଙ୍କ ନିଜର ଦୋଷ ନୁହେଁ—ତାଙ୍କ ମର୍ଯ୍ୟାଦାର ପରିବେଶର ଗୁଣ ।…ତୁ ମନ୍ତ୍ରୀଙ୍କ ଚେମ୍ବରକୁ ଗଲୁ—ମନ୍ତ୍ରୀ ତତେ ପଚାରିବେ—କୁହନ୍ତୁ କୁଆଡ଼େ ଆସିଲେ ?

ମଦନ : ମୁଁ—ମୁଁ ତାଙ୍କୁ କ'ଣ କହିବ ?

ଅନନ୍ତ : (ମୃଦୁହସି) ମଦନ, ତୋର ଏ ପ୍ରଶ୍ନଟା, ଜଳକୁଳୀ ଝିଅଟିଏ ବାହା ହେଇ ଶାଶୁଘରକୁ ଗିଲା ପୂର୍ବରୁ ମଧୁଶଯ୍ୟା ରାତର ପ୍ରୋଗ୍ରାମ ସମ୍ପର୍କରେ ତା ଜୁଆଁଭାଉଜକୁ ପଚାରିବା ପ୍ରଶ୍ନଭଳି ହେଇଯାଉଚ ।... ଇଣ୍ଟର୍‌ଭ୍ୟୁ ବୋର୍ଡଠିକାର : ମନ୍ତ୍ରୀଙ୍କୁ ସିଧା କହିବୁ—ମୁଁ ଜଣେ ଶିକ୍ଷିତ ବେକାର—ପ୍ରଥମ ଶ୍ରେଣୀ ଏମ୍. ଏ.—ଚାକିରି ପାଉନାହିଁ......

ମଦନ : ମୁଁ ତ ଏ ପର୍ଯ୍ୟନ୍ତ ଚାକିରି ଚେଷ୍ଟା କରିନାହିଁ, ମିଛ କହିବି କେମିତି ?

ଅନନ୍ତ : ଓଃ...ତମ ବାମପନ୍ଥୀମାନେ ମିଛ କହନ୍ତି ନାହିଁ ପରା—ମୋ.ଟେ ମିଛ କହନ୍ତି ନାହିଁ ! ବେଶ୍—ତୋର ମିଛ କହିବା ଦରକାର ନାହିଁ । ମନ୍ତ୍ରୀଙ୍କୁ କହିବୁ—ମୁଁ ଜଣେ ଶିକ୍ଷିତ ବେକାର—ମୁଁ କିଛି ଧନ୍ଦାରେ ପଶିବାକୁ ଚାହେଁ । ଦୟାକରି ମତେ ସାହାଯ୍ୟ କରନ୍ତୁ ।

ମଦନ : କିନ୍ତୁ...ଧନ୍ଦା ! ଏ ଧନ୍ଦା ଶବ୍ଦଟା...

ଅନନ୍ତ : ଏ କ୍ଷେତ୍ରରେ ଏ ଧନ୍ଦା ଶବ୍ଦଟା ହିଁ ହେଉଛି ଉପଯୁକ୍ତ ଶବ୍ଦ । ଏ ଶବ୍ଦଟାର ଅର୍ଥ ଏତେ ବ୍ୟାପକ ଯେ ବ୍ୟାଙ୍କ୍ କେଶ୍‌ରେ ଦଶଲକ୍ଷ ଟଙ୍କାର ସିନ୍ଦୁକ୍ କିଣିବାଠାରୁ ଆରମ୍ଭ କରି ପଞ୍ଚାଶ ଲକ୍ଷଟଙ୍କା ପକେଟ ରେ ନେଇ ରାସ୍ତାରେ ଇଲେକ୍‌ସନ ସ୍ଲୋଗାନ୍ ଦେବା ପର୍ଯ୍ୟନ୍ତ ଏ ଶବ୍ଦଟାରେ ସବୁ ରହିଯିବ । ମନ୍ତ୍ରୀ ଏ ଧନ୍ଦା ଶବ୍ଦଟା ତୋ ମୁହଁରୁ ଶୁଣିଲାମାତ୍ରେ ତୋ ସମ୍ପର୍କରେ ଅନେକ କିଛି କଳ୍ପନା ଜଳ୍ପନା ତାଙ୍କ ମାନସପଟରେ ଭାସି ଉଠିବ । ସେ ନିର୍ଣ୍ଣିତଭାବେ ତୋ ପ୍ରତି ଟିକେ ସହୃଦୟ ହୋଇ ଉଠିବେ ।

ମଦନ : (ଟିକଏ ରହି) ହୁଁ...ତା'ପରେ ?

ଅନନ୍ତ : ତୋ ସହିତ କିଛିକ୍ଷଣ କଥାବାର୍ତ୍ତା ହେବା ପରେ ମନ୍ତ୍ରୀ ଜାଣିପାରିବେ ବା ତୁ ମନ୍ତ୍ରୀଙ୍କୁ ଜଣେଇଦେବୁ ଯେ ତୁ ବାମପନ୍ଥୀ ଦଳର ଲୋକ ।

ମଦନ : ମୁଁ କୌଣସି ଦଳର ନୁହେଁ ।

ଅନନ୍ତ : ଓହୋ, ଦଳର ନ ହେଲେ ପନ୍ଥୀ ତ—ବାମପନ୍ଥୀ । ମନ୍ତ୍ରୀ ଯଦି ବାମପନ୍ଥୀ ହୋଇଥିବେ ତେବେ କଥା ନାହିଁ । ଆଉ ଯଦି ସେ ଦକ୍ଷିଣପନ୍ଥୀ ହୋଇଥାନ୍ତି ତେବେ ସେ ତୋ ମୁହଁରୁ ଧନ୍ଦା ଶବ୍ଦଟା ଶୁଣି

ହୋତେ ତାଙ୍କ ଦଳକୁ ଟାଣିନେବାପାଇଁ ବେଶ୍ କିଛି କନ୍‌ସେସନର ଲୋଭ ଦେଖାଇବେ ।

ମଦନ : (ଚଟ୍‌କର ଚେୟାର ଉପରୁ ଉଠି ଠିଆହେଲେ)

ଅନନ୍ତ : ତୁ ଏମିତି ଚଟ୍‌କରି ଚେୟାର ଉପରୁ ଉଠିପଡ଼ିବାର ଅର୍ଥ ମୋ କଥାକୁ ତୁ ସମର୍ଥନ କରୁନୁ ।

ମଦନ : (ଈଷତ୍ କ୍ଷୁବ୍ଧସ୍ୱରରେ) ନା—ନଟ୍ ଏ ବିଟ୍ । ମୁଁ ମନ୍ତ୍ରୀଙ୍କ ପାଖକୁ ଯିବନାହିଁ ।

ଅନନ୍ତ : ନ ଯିବୁ ନାହିଁ—ମୋ ଉପରେ ରାଗୁଚୁ କାହିଁକି ?

ମଦନ : ଆଚ୍ଛା ଅନନ୍ତ, ପି.ଜି. ବୋର୍ଡ ଫର୍ମ୍ ଦୁହେଁ ଏକାଠି ଦେଇଥିଲେ । ତୁ ଜାଣୁ ଆଉ ମୁଁ ଜାଣେ ଯେ···

ଅନନ୍ତ : ଯେ ଆମେ ଦୁହେଁ ଅଭିନ୍ନ ଆତ୍ମା—ଅନ୍ତରଙ୍ଗ ବନ୍ଧୁ ।

ମଦନ : ତୁ କ'ଣ ମୋର ଢଙ୍ଗ ଜାଣିନୁ ଯେ ମୁଁ ରାଗୁଛି ବୋଲି କଥାକଥାକେ ମତେ ଦୋଷ ଦେଉଛୁ ।

ଅନନ୍ତ : ଜାଣେ ବାବା ଜାଣେ । ଏବେ ତୁ ବୋଲୁ, ତମ ବାମପନ୍ଥୀ ସମସ୍ତଙ୍କର ଢଙ୍ଗ ଏମିତି । ଏଇଟା ତମମାନଙ୍କର ଆଇଡ଼ିଓଲୋଜି ନ ହେଲେ ବି ଏକ ପ୍ରକାର ଫିଲୋସଫି ।···ଅଚ୍ଛା, ମନ୍ତ୍ରୀଙ୍କ ପାଖକୁ ତ ଯିବୁନାହିଁ—ଧନ୍ଦାରେ ପଶିବୁ ନାହିଁ—ବ୍ୟାଙ୍କରୁ ସାହାଯ୍ୟ ନେବୁନାହିଁ—ଘରୁ ବାପା ବୋଉଙ୍କଠୁ ସାହାଯ୍ୟ ମିଳିବାର ଆଶାନାହିଁ—ଚାକିରିର କିଛି ଠିକ୍ ଠିକଣା ନାହିଁ ।—ଜୀବନର କିଛି ହେଲେ ସମ୍ବଳ ନାହିଁ, ଖାଲି ଗୋଟିଏ ଟିଉସନ୍ । ଚଳିବୁ କେମିତି ?

ମଦନ : କବିତା ଲେଖିବି—ଲେଖିବି—ଲେଖିଚାଲିଥିବି ।

ଅନନ୍ତ : କବିତା ଲେଖି ବଞ୍ଚିବୁ !

ମଦନ : ବଞ୍ଚିପାରିବିନି ? ଅନନ୍ତ, ମୁଁ କବିତା ଲେଖି ବଞ୍ଚିପାରିବିନି ?

ଅନନ୍ତ : ନିଶ୍ଚୟ ବଞ୍ଚିବୁ । ରବିସିଂ ବଞ୍ଚନ୍ତି ।

ମଦନ : ଏବେ ରବିସିଂ ? କାହିଁକି ଅନ୍ୟମାନେ ?

ଅନନ୍ତ : ଦେବତା ଲେଖି ଅନ୍ୟ ଜୀବମାନେ ଜଣେ ଘଟନାଦ୍ୱାରା, ତାଙ୍କୁ ବଡେଇ ରଖାହେଉଛି ।

ମଦନ : ମାନେ କଣ ତାଙ୍କୁ ବଡେଇ ରଖିଛି ?

ଅନନ୍ତ : ତାଙ୍କ ଶିକ୍ଷା, ତାଙ୍କ ଉଚ୍ଚ ଡିଗ୍ରୀ, ତାଙ୍କ ଇଣ୍ଟେଲେକ୍ଟ, ତାଙ୍କ ପରିବେଶ ଆଉ ସବୁଠୁ ଉପରେ ତାଙ୍କ ସ୍ତ୍ରୀ ।

ମଦନ : (ହସି) କେତେକ କ୍ଷେତ୍ରରେ ସ୍ୱାମୀ ସ୍ତ୍ରୀ ଦୁହେଁ କବିତା ଲେଖନ୍ତି । କିନ୍ତୁ ସ୍ତ୍ରୀ ସ୍ୱାମୀକୁ ବଡେଇ ରଖିଛି ......

ଅନନ୍ତ : ଶୁଣ, ଉଦାହରଣ ଦେଇ ବୁଝାଇ ଦେଉଛି । ମନେକର ସେଦିନ ସ୍ୱାମୀଙ୍କର ଅଫିସ ନାହିଁ କି କଲେଜ ନାହିଁ କି ୟୁନିଭର୍ସିଟି ନାହିଁ । ବ୍ରେକ୍‌ଫାଷ୍ଟ ପରେ ସ୍ୱାମୀ କବିତା ଲେଖି ବସିଲେ । ତେଣୁ ପରମ ପ୍ରୀତିଭରେ ସ୍ତ୍ରୀ ଟିକେ ଦେଖି ଆସିଲେ...କ'ଣ କରୁଛ କି ? ଓ କବିତା ଲେଖୁଛ ! ଥ୍ୟାଙ୍କ୍ସ୍ । ଦେଖ, ମୁଁ ଟିକିଏ କ୍ଲବ କି ସମିତି ଆଡ଼େ ବୁଲି ଆସେ । ସ୍ୱାମୀ ହସି ହସି ସ୍ତ୍ରୀଙ୍କ ଚିବୁକ ଟିକିଏ ହଲାଇଦେଇ ସମ୍ମତିସୂଚକ ମଥା ହଲାଇଦେଲେ । ସ୍ତ୍ରୀ ଷୋଳବର୍ଷର ଚଞ୍ଚଳା ଝିଅଟିଏ ପରି ଗୁଣୁ ଗୁଣୁ ଗୀତ ଗାଇ ଗାଇ ବାହାରି ଗଲେ ସେମିତି ପବନରେ ଫୁଲ ପାଖୁଡ଼ାଟିଏ ଭାସିଯାଏ ।

ମଦନ : ଏଇଟା ଅନନ୍ତ ର ତୋ ମନରୁ କଳ୍ପନା କରି କହୁଚୁ ।

ଅନନ୍ତ : କଳ୍ପନା କି ସତ ସେ କବିମାନେ ହିଁ କହିବେ । ଏଇ ସେ ସ୍ତ୍ରୀଟି ଦିନ ସାଢ଼େ ନଅଟାରେ କ୍ଲବ କି ସମିତିକୁ ଗଲେ ଦିନ ସାଢ଼େ ତିନିଟା ପୂର୍ବରୁ ସେ ଫେରିବେନି । ଏଣେ ବାହାରେ ପତ୍ରିକା ପ୍ରକାଶକ ଅପେକ୍ଷା କରି ବସିଛନ୍ତି । ଘରେ ସେତେବେଳେ ସ୍ତ୍ରୀ ନାହାନ୍ତି, ଆଉ କିଛି ଗୋଳମାଳ ନାହିଁ । ତେବେ ଶାନ୍ତ ମନରେ କବିତା ଶେଷକରି ପ୍ରକାଶକଙ୍କୁ ଧରେଇ ଦେଲେ—ଅର୍ଥାତ୍ ବଢ଼ିଗଲେ ।

ମଦନ : ସ୍ତ୍ରୀ ଯଦି ଘରେ ଥାଆନ୍ତେ ?

ଅନନ୍ତ : ସ୍ୱାମୀ କବିତା ଲେଖିହେବାର ପନ୍ଦର ମିନଟ୍ ଭିତରେ ଗୋଡ଼ ଚପିଚାପି ସ୍ୱାମୀଙ୍କ ପଛପଟେ ଯାଇ ଠିଆହେବେ । ସ୍ୱାମୀଙ୍କ କାନରେ ହାତପକେଇ ସାମ୍ନାକୁ ଟିକେ ଝୁଙ୍କିପଡ଼ି କହିବେ—ଓ, ଶ୍ୱେତପଦ୍ମା ! କବିତା କି ଶ୍ୱେତପଦ୍ମା ନା ସେ ଛିଡ଼ିଛି କି ଶ୍ୱେତପଦ୍ମା ?

ମଦନ : (ହସିପକାଇଲା)

ଅନନ୍ତ : ତୁ ସିନା ହସୁଚୁ—ସ୍ୱାମୀ ବେଚାର ବଦନ ନଇସ ଅକ୍ଷିରେ ସ୍ତ୍ରୀ ଅଡ଼କୁ ଚାହିଁଲେ । ସ୍ତ୍ରୀ ଚଟ୍କରି ବୁଝିପଡ଼ି, ଏଇ କେତେ ପଦ କଥା କହି ସେଠାରୁ ଖସିଗଲେ—ନାଁରେ ମୁଁ ଯାଉଚି । ମୋ ମୁଣ୍ଡଟା କାହିଁକି ଟିକେ ଧରୁଚି ଯେ, ମୁଁ ଯାଉଚି ଟିକେ ଶୋଇପଡ଼ିବି ।...ସେଇ ଯେ ସ୍ତ୍ରୀ ଶୁଆଘରେ ଶୋଇବାକୁ ଗଲେ, ରାତି ସାଢ଼େ ଦଶଟା ପର୍ଯ୍ୟନ୍ତ ସେ ଆଉ ସ୍ୱାମୀଙ୍କ ପାଖ ମାଡ଼ି ନାହାନ୍ତି । ସେ ଅବସରରେ ବସି କବିତା ଲେଖିଲେ ।

ମଦନ : ନିଶ୍ଚିତ, କେତେକ ସ୍ତ୍ରୀ ସ୍ୱାମୀମାନଙ୍କ ଲେଖାଲେଖି ପସନ୍ଦ କରନ୍ତିନାହିଁ ।

ଅନନ୍ତ : ଓହୋ ! ଏମିତି କେତେକ ସ୍ତ୍ରୀ ଅଛନ୍ତି, ଯେଉଁମାନେ ସେମାନଙ୍କର ସ୍ୱାମୀମାନଙ୍କୁ ହିଁ ପସନ୍ଦ କରନ୍ତି ନାହିଁ । ସ୍ତ୍ରୀ ବୋଲି ସ୍ୱାମୀମାନେ ବାଦ୍ ପଡ଼ିଯାଉଚନ୍ତି ନା କବିତା ବାଦ୍ ପଡ଼ିଯାଉଚି ।

ମଦନ : ହୁଁ (ଚିନ୍ତିତ ମନରେ ପଦଚାରଣ କରୁଥାଏ)

ଅନନ୍ତ : ଶୁଣ୍ ମଦନ, ଏକଥା ତୁ ଜାଣୁ—ମୁଁ ଜାଣେ ଅଉ ତୋ ଲେଖାର ପାଠକମାନେ ଜାଣନ୍ତି—ତୁ ଭଲ ଲେଖୁଛୁ । କବିତା ଲେଖୁଛୁ, ବେଳେବେଳେ ଗଳ୍ପ ବି ଲେଖୁଛୁ ; ଉପନ୍ୟାସଟିଏ ଆରମ୍ଭ କରିଛୁ ; ନାଟକ ଲେଖିବାର ଇଚ୍ଛା ଅଛି—ମାନେ ସବୁକିଛୁ କରୁଛୁ । କିନ୍ତୁ ତୋର କ'ଣ ସେ ଧୈର୍ଯ୍ୟ ଅଛି ?

ମଦନ : ନାହିଁ ବୋଲି ତୁ ଭାବୁଛୁ କାହିଁକି ?

ଅନନ୍ତ : ତୋତେ ଦେଖି—ତୋ ମତବାଦ ସବୁକୁ ଶୁଣିକରି ।

ମଦନ : ମଣିଷର ମତବାଦଟା ହେଉଛି ସଂସ୍କୃତିରୂପେ ତା ଜନ୍ମ । ଏଠି ଭଗବାନଙ୍କର ବି ଅସ୍ତ୍ର ନାହିଁ । ମୋ ମତବାଦପାଇଁ ମୁଁ ତାହାର ପାଦରେ ମୁଣ୍ଡ ନୁଆଁଇ ପାରିବିନ ।

ଅନନ୍ତ : ଆଜ୍ଞା ।

(ଅନନ୍ତ ଝରକା ପାଖକୁ ଉଠିଯିବେ । ଏତିକିବେଳେ ଗୋଟିଏ ଟ୍ରକ୍ ପାଖ ରାସ୍ତାରେ ଚାଲିଗଲା । ଫଳରେ ଗୁଡ଼ାଏ ଧୂଳି ଆସି ଘରେ ଭର୍ତ୍ତି ହୋଇଗଲା)

ମଦନ : ଝରକାଟା ବନ୍ଦ କରିଦେ ଅନନ୍ତ, ନ ହେଲେ ଧୂଳିରେ ପୋତିହେଇ ପଡ଼ିବୁ । (ଅନନ୍ତ ଝରକା ବନ୍ଦନକରି ମଦନକୁ ଚାହିଁ ରହିଲା) ଏମିତ ଚାହିଁ ରହିଲୁ କ'ଣ ? ଝରକା ବନ୍ଦ କର ।

ଅନନ୍ତ : ଟ୍ରକ୍‌ଟା ଚାଲିଗଲାଣି । ଘର ଭିତରେ ଯାହା ଧୂଳି ଭର୍ତ୍ତି ହେବାକଥା ହେଇଗଲାଣି । ଆଉ ଝରକା ବନ୍ଦ କରି ଲାଭ ନାହିଁ ।

ମଦନ : ଏଇ ଗଲା ସେମୁଣ୍ଡରେ ଗୋଟାଏ ବଇଟ କୋଠା ତିଆରି ଚାଲିଛି । ସ୍କୁଲ୍‌ପରେ ଦେଖିବୁ, ପ୍ରତି ପାଞ୍ଚ ମିନିଟ୍‌ରେ ଗୋଟାଏ ବାଲି କି ଇଟା ବୋଝେଇ ଟ୍ରକ୍ .....

ଅନନ୍ତ : (ବାଧାଦେଇ) ତା'ହେଲେ ପ୍ରତ୍ୟେକ ପାଞ୍ଚ ମିନିଟ୍‌ରେ ଥରେ ଝରକା ବନ୍ଦ ହଉଥିବ ଆଉ ଖୋଲୁଥିବ ?

ମଦନ : ଏ ସବୁ କଥାରେ ଏମିତକା ଯୁକ୍ତିର କିଛି ମାନେ ହୁଏନା ।

ଅନନ୍ତ : ମୁଁ ଯୁକ୍ତି କରୁନି ମଦନ । ଝରକା ବନ୍ଦ କରି ରଖିଲେ ବି ଧୂଳିରୁ ରକ୍ଷା ପାଇବୁନି । ତୋର ଏ ଘରଟା ଗୋଟାଏ ନୂଆଁଣିଆ ଚାଳଘର । ଏଇ ଚାଳ ଉପରକୁ ଚାହାଁ—ଚାଳ ତାଳୁରୁ ଚାଳ ପ୍ରାୟ ଛଅ ଇଞ୍ଚ ଗ୍ରହୁଚି—ଅର୍ଥାତ୍ ଧୂଳି ଆସିବା ପେଇଁ ସେଇଟା ହେବ ପ୍ରଶସ୍ତ ବାଟ ।

ମଦନ : ସତେତ...ମୁଁ ଏ ଯାଏ ଲକ୍ଷ୍ୟ କରିନି ।

ଅନନ୍ତ : ଆଠଦିନ ହବ ଏଠି ଆସି ରହିଲୁଣି—ଏତକ ଲକ୍ଷ୍ୟକରିନୁ ?

ମଦନ : ଖାଲି ରୁ ଗୋଟାଏ କଥା ଚିନ୍ତାକର ଅନନ୍ତ । ଏ ଘରର ମାଲିକ ଏକାବେଳେକେ ରାସ୍ତାର ଧାର ଉପରେ ଇଟାମାଟିର ଏ ଚଉର୍ଫ ଚାଳଘର ତିଆରି କରି ଜର୍ଜ୍ରିତ ହେଇ ବସିଛି । ତେଣେ ରାସ୍ତାର ମାଲିକ, ମାଙ୍କ ଦାଉଫୁଟ ଚଉଡ଼ା ରାସ୍ତାକୁ ଛଅଫୁଟ ପିଚ୍‌କରି ଦୁଇ ପାଖରେ ଖଣ୍ଡଫୁଟ

ଲେଖାଏଁ କଷ୍ଟସ୍ରୋତ ଛାଡ଼ି ଦେଉଛୁ । ଏ ଅବସ୍ଥାରେ କାହା ତାଙ୍କୁ ଲଙ୍ଘନକରି ମୁଁ ଲାଭ ବା କ'ଣ ପାଇଥାନ୍ତି ?

ଅନନ୍ତ : କିନ୍ତୁ ତୋର ଏମିତ ଦୁଃଖ କରିବାର ମୂଳ ବା କ'ଣ ଅଛି ? ତୁ ଆଜି ଏ ଘର ଭଡ଼ା ନେଇ ରହିଛୁ । ତୋ' ପରେ ଅନ୍ୟ ଯିଏ ଆସିବ ସେ ମଧ୍ୟ ତୋପରି ଠିକ୍ ଏମିତ ଅବସ୍ଥା ଭୋଗିବ ।

ମଦନ : (କଥାରେ ଗୁରୁତ୍ୱ ଦେଇ) କିନ୍ତୁ ଏମିତ ଅବସ୍ଥା—ଏମିତ ଦୁଃଖ ଭୋଗିବାପାଇଁ କଣ ଆମର ଜନ୍ମ—ଆମର ସୃଷ୍ଟି ?

ଅନନ୍ତ : ଏଇ ବାହାନାକୁ ତୋର ଉଜ୍ଜମ୍ । ତମର ଜନ୍ମ କୋଉଥି ପାଇଁ ମୁଁ କହିପାରିବି ନାହିଁ । କିନ୍ତୁ ଏ ସହରରେ ଏମିତିକା ସ୍ରୋତ ଆଉ ଏ ଧରଣର ଖୁଲଘରର ସୃଷ୍ଟି ସେ ତମମାନଙ୍କୁ ଦୁଃଖ ଦେବାପାଇଁ ହୋଇଛି, ଏକଥା ମୁଁ କୋଉ୍ ଦେଇ କହିପାରିବି ।

ମଦନ : କଥାଟାକୁ ତୁ ସେତେ ହାଲ୍କା କରିଦେଲେ ବି ମୋର ମନେ-ହେଉଛି......

ଅନନ୍ତ : କଣ ?

ମଦନ : ଏହିପରି ଶ୍ରେଷ୍ଠ ଶ୍ରେଷ୍ଠ ଘଟଣାରୁ ହିଁ ବିପ୍ଳବର ଜନ୍ମ ହୁଏ ।

ଅନନ୍ତ : ନିଶ୍ଚୟ ହୁଏ । କିନ୍ତୁ ସେଇ ସଙ୍ଗେ ସଙ୍ଗେ ମୋର ମଧ୍ୟ ମନେହେଉଚି ଯେ, ଏଥି'ଠାରୁ ବଳି ଅଦ୍ଭୁତ ଶ୍ରେଷ୍ଠ ଶ୍ରେଷ୍ଠ ଘଟଣାରୁ ବି ବିପ୍ଳବର ମୃତ୍ୟୁ ହୁଏ ।

ମଦନ : ମାନେ ?

ଅନନ୍ତ : ତୁ ଜଣେ ଶିକ୍ଷିତ ବେକାର । ଭଲକରି ମୁଠେ ଖାଇପାରୁନୁ—ଭଲରେ ରହିପାରୁନୁ । ସେଇଥିପାଇଁ ଉପାର୍ଜନର ଉପାୟ ଖୋଜିବା ସଙ୍ଗେ ସଙ୍ଗେ ଏଇ ଖୁଲଘର ଆଉ ସ୍ରୋତର ଧକ୍କାରୁ ତୋ ମନରେ ବିପ୍ଳବ ଦେଖାଦେଉଚି ।

ମଦନ : ଭୁଲ୍ କହିଲୁ ଅନନ୍ତ—ତୋର ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ବିପ୍ଳବ ଓ ବିପ୍ଳବୀର ସଜ୍ଞା ଏମିତ ନିରୁପଣ କରାଯାଏନା ।

ଅନନ୍ତ : ବହୁ ବାଦ-ବିସମ୍ବାଦପୂର୍ଣ୍ଣ ଆଜିର ଏ ପୃଥିବୀରେ ମୁଁ ମୋକଥା ଉପରେ ତୋତେ ଅଧୌ ଯୁକ୍ତି କରୁନାହିଁ ।

ରୁ ବର୍ତ୍ତମାନ ତୋର ଏ ପଢ଼ଣା ଘରେ ଥିବା ଭଦ୍ରଲୋକଙ୍କ କଥା ଚିନ୍ତା କର—ସେଇ ଯିଏ ପାଟେଣ ସେଗ୍ କୋଠାଘର ଭଡ଼ା ନେଇ ଅଛନ୍ତି ।

ମଦନ : ତୁ କଣ କହୁଛୁ ସେ ସୁଖରେ ଅଛନ୍ତି ? ତାଙ୍କ ମନରେ କୌଣସି ଅଶାନ୍ତି ନାହିଁ ?

ଅନନ୍ତ : ନ ରହିବ କେମିତି ? କିନ୍ତୁ ତୋ'ପରି ଏ କୁଳଘର କାମ୍ନା ବାସ୍ନାର ମୂଳ ତାଙ୍କ ଅଶାନ୍ତିର କାରଣ ନୁହେଁ । ସେ ଚାହାଁନ୍ତି ତାଙ୍କ ପ୍ରିୟତମା ପତ୍ନୀଙ୍କ ପାଇଁ ନୂଆ ନୂଆ ଡ୍ରେସ—ଚାହାଁନ୍ତି ନିଜର ଖଣ୍ଡିଏ କୋଠାଘର । ଅନ୍ୟ କଥାରେ, ଯାହାର କୁଳଘର ଅଛି ସେ ଚାହେଁ କୋଠା । ଯିଏ କୋଠାଘରେ ରହୁଛି ସେ ଚାହେଁ ମଟରକାର । ଆଉ ଯିଏ ମଟର ଚଢ଼ିପାରୁଛି, ସେ ଚାହେଁ ଏରୋପ୍ଲେନରେ କଣ୍ଟିନେଣ୍ଟ ବୁଲିବାକୁ । କିନ୍ତୁ ଯେଉଁଦିନ ଏ ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ଏକ ହୋଇଯିବ……

ମଦନ : ଦୃଷ୍ଟିଭଙ୍ଗୀ ଏକ ହୋଇଯିବ ! ମାନେ ?

ଅନନ୍ତ : ଯୁଗ ଯୁଗ ବିତିଗଲେ ବି ଆମର ସବୁ କୋଠାଘର ମାଟିରେ ମିଶିଯିବ ନାହିଁ କି ସବୁ କୁଳଘର କୋଠାଘର ହୋଇପାରିବ ନାହିଁ । ଅନନ୍ତକାଳ ଯାଏ ଏ ଦୁହେଁ ରହିବେ ହିଁ ରହିବେ । ସେଥିପାଇଁ ଯେଉଁଦିନ କୋଠାଘର କୁଳଘରକୁ ହେୟ ମନେକରିବ ନାହିଁ, କି କୁଳଘର କୋଠାଘରକୁ ହିଂସା କରିବ ନାହିଁ—କୁଳଘର କୋଠାଘରକୁ ଢେଲା ଫିଙ୍ଗିବ ନାହିଁ କି କୋଠାଘର କୁଳଘର ଉପରକୁ ବନ୍ଧୁକ ଚଳାଇବ ନାହିଁ, ସେଇଦିନ ଏ ଦୁହିଁଙ୍କର ଦୃଷ୍ଟିଭଙ୍ଗୀ ଏକ ହୋଇଯିବ । ଆଉ ସେଇଦିନ ହିଁ ବିପ୍ଳବର ଇତି ନହୋଇ ହେବ ଇତିଶ୍ରୀ । ତା' ନହେବା ପର୍ଯ୍ୟନ୍ତ……

(ମଦନ ସେମିତି ଏ ଯୁକ୍ତିକୁ ଖଣ୍ଡନ କରିବାକୁ ପ୍ରସ୍ତୁତ ନୁହେଁ)

ମଦନ : ହୁଁ, ତା ନହେବା ପର୍ଯ୍ୟନ୍ତ…?

ଅନନ୍ତ : ତୋ' ମୋ'ପରି ଯେଉଁମାନେ ଆମେ ଏଇ "ଲଙ୍ଗ୍ ଲିଭ୍ ରିଭୋଲ୍ୟୁସନ୍"ର ସ୍ୱର ତୋଳୁଛୁ, ଅଥଚ ସେ ସ୍ୱର ଆମର ଅନ୍ନଦାତାଙ୍କ ସ୍ତୁତିଗାନ "ୟୋର୍ ମୋଷ୍ଟ୍ ଓବିଡିଏଣ୍ଟ ସରଭାଣ୍ଟ"ରେ ଲୀନ ହୋଇ ଯାଉଥିବ ।

ମଦନ : "ୟୋର ମୋଷ୍ଟ୍ ଓବେଡ଼ିଏଣ୍ଟ ସର୍ଭାଣ୍ଟ" ! ! !

ଅନନ୍ତ . ଷ୍ଟପ୍ ! ପଢ଼ାପଢ଼ିରେ ତୁ ଭୁଲିଯାଉଛୁ । ଇଂଲଣ୍ଡର ସ୍ୱପ୍ନରେ ପଡ଼ି ତୁ ଯଦି ଅଳ୍ପ ଆଇ. ସି. ଏସ୍. ଲକ୍ଷ୍ମଣରେଖ ଯାଉ, ତେବେ ଦିନକୁ ଅନ୍ତତଃ ଦଶଥର ତୋ ବୁଟ୍ ଠକ୍ ଠକ୍ କରି ସିଟି ତୋ ଉପରବାଲାଙ୍କୁ ସଲାମ କରୁଥିବୁ ।...ବୋକାଙ୍କ ପରି ଚାହିଁବୁ କ'ଣ । ବି. ଏ.ରେ ଆମର କ୍ଲାସମେଟ୍ ସେଇ ପିଲାଟା ନୁଆଲ୍ ଦେବ୍—କଲେଜ ଗ୍ରାଉଣ୍ଡରେ ମାତ୍ର ପୋଲିସ ମାଡ଼ରେ ତା ମୁଣ୍ଡ ଫାଟିଥିଲା । ଏବେ ପୋଲିସ ଡେପ୍-ଇନ୍‌ସପେକ୍ଟର ସ୍କନ୍ଧରେ ଭାର ଧୂଳିଦାନ ତଳେ ହରିପୁର କଲେଜର ଛାତ୍ରଛାତ୍ରୀ ପିଲାଙ୍କୁ ପିଟି ତାଙ୍କ ମୁଣ୍ଡ ଫଟେଇ ଦେଉଚି । କାରଣ ସେ ହେଉଚି ତା ସରକାରରେ ଜଣେ ମୋଷ୍ଟ ଓବେଡ଼ିଏଣ୍ଟ ସର୍ଭାଣ୍ଟ ।

ମଦନ : ହୁଁ, ବର୍ତ୍ତମାନ ମୁଁ ଜାଣେ ସେଇ ଇଂରାଜୀ ଶବ୍ଦ "ସିନସିଜ୍‌ମ୍" କଥା କହୁଛୁ—ଯାହାର ଗୋଟାଏ ଅର୍ଥ ହେଲା ଦୁଃସ୍ୱପ୍ନ ।

ଅନନ୍ତ : କିନ୍ତୁ...କିନ୍ତୁ ଏଇ ଦେଖ୍, ତୋ ଦୁଆର ମୁହଁରେ ଭିକାରୀର ଆବିର୍ଭାବ ହେଲାଣି । ତୁ ବର୍ତ୍ତମାନ ତୋ ଦୁଃସ୍ୱପ୍ନର ପରିଚୟ ଦେ'—ମୁଁ ଶୁଣିବି ।

ମଦନ : ଆଜି ପରା ରବିବାର !

ଅନନ୍ତ : ରବିବାରଟା ସରକାରୀ ଚାକିରିଆମାନଙ୍କ ପାଇଁ, ଯେଉଁମାନଙ୍କର ରବିବାରଟା ଶନିବାର ଦିନ ଗୋଟାଏ ବେଳଠୁଁ ଆରମ୍ଭ ହୋଇ, ସୋମବାର ଦିନ ଦଶଟା ପର୍ଯ୍ୟନ୍ତ ଚାଲେ । ପ୍ରାଇଭେଟ୍ କମ୍ପାନୀର ଚାକର ମୁଁ—ମୋ ମନ ଇଚ୍ଛାହେଲେ ବର୍ଷକ ତିନିଶହ ପଞ୍ଚଷଠି ଦିନ କାମ କରିବି । ପ୍ରାଇଭେଟ୍ କମ୍ପାନୀରେ କାମ ମାନେ କାମ । ମୁଁ ବେଶି କାମ କରିବି—ଉତ୍ପାଦନ ବଢ଼ିବ—ବଜାରକୁ ମାଲ ଆସିବ—ଖାଉଟିମାନେ ହଇରାଣ ହେବେନାହିଁ ।

ମଦନ : ଆଉ ତୁ ! ତୋର ଲାଭ କ'ଣ ?

ଅନନ୍ତ : କିନା ଜରୁରୀ ଭଳି ହାଜିରାରେ ଓଭର ଟାଇମ୍ କରି ମୋ ଦରମାର ଅଧିକଗୁଡ଼ା ରୋଜଗାର କରିବି ।...ହଁ, ତୁ ଅଳ୍ପ

ପଞ୍ଚାଯ଼ତରେ ଛିଡ଼ାହେବ ନିର୍ବାଚନ୍ ପାଇଁ ଯେମିତି ଆମ ଘରକୁ ଆସିବୁ—ମୁଁ ଯାଉଛି ।

(ଅନନ୍ତ ବାହାରିଗଲେ । ଝରକା ପାଖକୁ ଆସିଲା ପ୍ରାୟ ଏଗାର ବାରବର୍ଷର ଚାକରାଣୀ ଝିଅ କୁନୀ )

କୁନୀ : (ଝରକା ସେପାଟରୁ) ବାବୁ ଭଦ୍ରମିଠେ ମିଳୁ···ଭଦ୍ରମିଠେ ମିଳୁ ବାବୁ ।

ମଦନ : (କୁନୀକୁ ଦେଖି) ନାହିଁ, ଭଦ୍ରମିଠେ କାହି ନାହିଁ, ଯା ।

(କୁନୀ ଝରକା ପାଟରୁ ଅଦୃଶ୍ୟ ହୋଇଗଲା । ଅନ୍ତରାଳରୁ ଶୁଣାଗଲା···)

ଶୋଭା : କ'ଣ ହେଲା କଲେ କୁନୀ ?

କୁନୀ : ନାହିଁ ଯେ ମନାକଲେ ।

ଶୋଭା : କିଏ ମନାକଲା ?

କୁନୀ : ସେଇ ଛିଡ଼ାକ ପାଟରେ ଯୋଉ ବାବୁ ବସିଚନ୍ତି ।

ଶୋଭା : ଭଲେ ତାଙ୍କୁ କହୁନୁ—ଲୋ ରଇବାର ପରା ଅମେ ଏଇ ଘରୁ ଭଦ୍ର ନେଇଥିଲୁ ।

କୁନୀ : ତୁ ଆସୁନୁ ।

ଶୋଭା : ଚାଲ ।

(ଅନ୍ତରାଳରୁ ଏ ଦୁହିଁଙ୍କ କଥା ମଦନକୁ ଶୁଣାଯାଉଥାଏ । ସେ ଝରକା ଆଡ଼କୁ ଚାହିଁଲା । ଶୋଭା ଓ କୁନୀ ଝରକା ପାଟକୁ ଆସିଲେ)

କୁନୀ : ବାବୁ, ଗଲା ରଇବାର ଭଦ୍ର ଦେଇଥିଲ—ଆଜି ମନାକରୁଚ ?

ମଦନ : ଗଲା ରବିବାର ଯିଏ ଥିଲେ ସିଏ ଆଉ ଏଘରେ ନାହାନ୍ତି ।

ଶୋଭା : ସିଏ ନ ଥିଲେ ବାବୁ ତେମେନ ଅଛ !

ମଦନ : (ଶୋଭାକୁ ଦେଖି ମଦନ ଆଖିରେ ଜନ୍ଧୁଟା ବିସ୍ମୟ) ଏଁ !

ଶୋଭା : ଯୋଗୀ ଭଟାଇଙ୍କି କ'ଣ ଝାଳ ହାତରେ ଫେରେଇ ଦଅନ୍ତ ବାବୁ ?

ମଦନ : ତ···ମେ ?

କୁନୀ : ସିଏ ପରା ବାବୁ ଶୋଭାନାନୀ ।

(ଶୋଭା କଟମଟ ଆଖିରେ କୁନୀକୁ ଚାହିଁଲା)

ଶୋଭା : ତୁମ ବାବୁ, ଅମ ସାଙ୍ଗବାଲା ସବୁ ପଳେଇଲେଣି—ସ୍କୁଲ ମୁଠାଏ ଭ···

ମଦନ : ଏଁ !···ଅଚ୍ଛା ଅଚ୍ଛା, ତମେ ରହ—ମୁଁ ଭିତରୁ ଆଣୁଛି । (ଭିତରକୁ ଗଲା)

ଶୋଭା : (ଜନ୍ମଗଳାରେ) ଦେଖିଲୁଟେ, ନାହିଁ କହୁଥିଲୁପରା !

କୁନୀ : ତୁ ଆଗେଇଲୁ ସିନା···

ଶୋଭା : ହଉ ତୁ ରହ । (ମଦନ ଅସିଲା)

ମଦନ . ଦୁଃଖର କଥା, ସ୍କୁଲ ମୋଟେ ନାହିଁ । ଅଉ ପଇସା (ଗୋଟିଏ ଦୁଇଟି ଆନ ଦେଖି) ଭାଇ—ପଇସା ବି ଛ······

ଶୋଭା : ହଉ ବାବୁ—ନାହିଁ ଯଦି ଆମେ ଯାଉଛୁ । ଆ'ଲୋ କୁନୀ······

ମଦନ : ଶୁଣ । ତମେ କଣ···ଖାଇବ ?

ଶୋଭା ଓ କୁନୀ : ଖାଇବୁ !

ମଦନ : ମୁଠାଏ ଭାତପାଇଁ ଏତେବେଳଯାଏ ଅପେକ୍ଷା କରି ରହିଲିବା ଠିକ୍ ହେବନାହିଁ । ତମେ ଆସ—ଯାହା ଅଛି ଦ'ଟା ଖାଇଦେଇ ଯାଅ । (ଭିତରକୁ ଗଲା ।)

ଶୋଭା : ନାହିଁ ବାବୁ, (ଟିକଏ ବଢ଼ପାଟିରେ) ନାହିଁ ବାବୁ, ଅମେ କଣ ଖାଇବୁନ······ଆ'ଲୋ କୁନୀ ।

(ଶୋଭା ବାହାରିଗଲା । କୁନୀ କବାଟ ଦରଜାପାଖରେ ଠିଆହୋଇଥାଏ ।)

କୁନୀ : (ଡାକିଲା) ଶୋଭନାନୀ ! (ଶୋଭା ଫେରି ଅସିଲା)

ଶୋଭା : କ'ଣ କହୁଛୁ ?

କୁନୀ : ଖାଇନଥାନ୍ତେ ?

ଶୋଭା : (ଜପନ୍ତୁ ରାଗି) କ'ଣ କହିଲୁ ?

କୁନୀ : ବାବୁ ଖାଇବାକୁ ଡାକୁଥିଲେ······

ଶୋଭା : ସକାଳୁ ଯଉ ପଖାଳ ପେଟେ ଖାଇ ବାହାରିଥିଲୁ, ଏମିତି ଭଲେ ଭୋକ କଲାଣି ?

କୁମୀ : ଅଛି ବୁଲୁଥିବେ—କୋଉ ଏମିତ ହାତ ମୁଠାରେ ଜମାଇ ମୁଠାଏ ପଖାଳ ଦେଇଥିବେ । ଚୋବଣି ନାରେ ଅଧଛେଲୁଆଏ ପାଣି ।

( କୁମୀର ମୁହଁକୁ ଚାହିଁ ଶୋଷ ସେପର ଦ୍ୱିଧାରେ ପଡ଼ିଲା )

ଶୋଷ : ହଁ, ତାକ୍ ।

କୁମୀ : (ଝରକା ଏ ପାଖରେ ଥାଇ ଡାକିଲା) ବାବୁ···ବାବୁ ।

(ଶୋଷ ଝରକା ହଡ଼ାଳକୁ ଚାହିଁଲା, ମଦନ ଝରକା ପାଖକୁ ଆସିଲା)

ମଦନ : ଖାଇବ କି ? ତୋ ନାଁ···ତୋ ନାଁ ନା କ'ଣ କି ?

କୁମୀ : ଶୋଷ···

ମଦନ : କାହିଁ ଗଲା ସେ ?

କୁମୀ : ଏଇଠି ପଛୁ ହେଇ ଠିଆ ହେଇଛି । (ଶୋଷ ଝରକା ପାଖକୁ ଆସିଲା)

ଶୋଷ : ଦଅ ବାବୁ କ'ଣ ଦେଉଚ ।

ମଦନ : ଭିତରକୁ ଆସ ।

ଶୋଷ : ଭିତରକୁ ! (ଶୋଷ ମନରେ ଭୀଷଣ ସଂଶୟ ଓ ସଙ୍କୋଚ)

ମଦନ : ବାହାରେ ତ ବାଲିଆ ବୋଇଲେ ବୁଝିଲେ—ସେଠି ବସି ଖାଇବ କେମିତି ? ଭିତରକୁ ଆସ···ମୋ ପାଖରେ ତମର ଡରିବାର କିଛି ନାହିଁ—ମୁଁ ତମରମାନଙ୍କ ପରି ଜଣେ । ଆସ ।

କୁମୀ : ଯିଲ ମ ଯାନ ଭିତରକୁ ।

ମଦନ : ହଁ ଆସ ।

(ପ୍ରଥମେ କୁମୀ ଓ ପଛେ ପଛେ କୁଣ୍ଠିତ ମନରେ ଶୋଷ ଘର ଭିତରକୁ ଆସିଲା । କୁମୀ ଚଟାଣେ ବସିପଡ଼ିଲା । ମଦନ ଭିତରକୁ ଗଲା)

କୁମୀ : ଘରଟି ଏକା ନାଆଁ, ଖାଲି ଭଲ ବାବୁଟିଏ ।

ଶୋଷ : ସିଏତ ଜାଣି ଭଲ । ତୁ ଆସି ଏଣେ ଏଗାର ବର୍ଷର ଟୋକୀଟାଏ ହେଲୁଣି, ଟିକିଏ ଅକଲ ହେଉନି ? ସେ ଡାକ ଦେଲେ ଦଉ ତୁ ଆସି ଘର ଭିତରେ ହାଜର !

ବୁନୀ : ସେ ସଡ଼କଟା ଉପରେ ବସି କୋଉଠି ଖାଉଥାନ୍ତେ ? ତାଙ୍କୁ ମୋ ବୋଉ ତଳେ କ'ଣ କହୁଥିଲେ ?

ଶୋଭା : ହଉ ଆଉ, ତୁ ଆଉ ବକର ବକର ହୁ'ନେଇଁ ।

(ପଖାଳ ଓ ଭଜା ଆଣି ମଦନ ଆସିଲା ଓ ଟେଲେ ରଖିଲା)

ମଦନ : ଏଇ ନଅ, ସ୍ୱାଠୁ ବେଶି କିଛି ମୁଁ ଦେଇପାରିବିନି । ଏ ବାସି ପଖାଳ ଦ'ଟା ଆଉ ଦ'ଖଣ୍ଡ ଭଜା । (ହସ ହସ ମୁହଁରେ) ଚଳିବ ତ ?

ଶୋଭା : କେବେ ମୁଠେ ବୁଲିଲି ଦହିନାହାନ୍ତି—ତମେ ବୋଲାକର ଖାଇବା ଦେଲଣି—ଆଉ ଚଳିବା କଥା କ'ଣ ପଚାରୁଛ ?…ଖା'ନେ ବୁନୀ (ବୁନୀ ଖାଉଛି)

ମଦନ : ଆଉ ତମେ ?

ଶୋଭା : ମୁଁ ଖାଇବିନି ।

ମଦନ : ଖାଇବ ନାହିଁ ?

ଶୋଭା : ନାହିଁବାବୁ, ମୁଁ ଖାଇବ ନେଇଁ । ସେଇ ବୁନୀ ଖାଉ, ମୁଁ ବସୁଚି । (ବସିଲା)

ମଦନ : (ଟିକିଏ ରହି) ମୋ ପାଖେ ତ ଆଉ କିଛି ନଥିଲା—ଏ ପଖାଳ ଦ'ଟା । ସେଇଥିପାଇଁ ତମର ଖାଇବାକୁ ମନ ହେଉନାହିଁ ।

ଶୋଭା : (ସ୍ଥିର ଦୃଷ୍ଟିରେ) ମୁଁ ଭିକାରୁଣୀଟାଏ—ମତେ ଏକଥା କହିଲେ ମୁଁ ଆଉ କ'ଣ ତମକୁ କହିବ ?

ମଦନ : (ଶୋଭା କଥାରେ ଆହତ ହେଇଚ) ମୁଁ…ମୁଁ…ମୋର ଭୁଲ ହେଇଚ । (ନିଜକୁ ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରାଇ ଆଣି) ମୁଁ ଯାଉଚି, ତମେ ଭୋଜନ କରୁଚ ।

ଶୋଭା : (ମ୍ଲାନ ହସି) ଯେଉଁଦିନଠାଏ ଘରର ହୁଅ ହେଇଥିଲି ଲାଜ କ'ଣ ଜାଣିଥିଲି । ଘର ଛାଡ଼ି ବାହାରେ ବୁଲୁଚି, ଲାଜ କୋଉଠୁ ଆସିବ ? (ମଦନ ଯିବାରେ) ଯତ କହୁଚ ବାବୁ ମୁଁ ଖାଇବ ନାହିଁ । ବୁନୀ ଖାଉ । ଖା'ନେ ବୁନୀ । (ବୁନୀ ଖାଇବା ଆରମ୍ଭ କଲା । ଶୋଭା ହଠାତ୍ କହି ଉଠିଲା) ଆରେ ବୃଣ୍ଡାଳୀ ତୁ କ'ଣ କଲୁ !

କୁମୀ : (ଭୟଯାଇ) କ'ଣ ନାହିଁ ?
ଶୋଭ : ବାବୁଙ୍କ ବାସନରେ ଖାଇଲୁ ?
ମଦନ : ଆଚ୍ଛା, ଖାଉ—ଖାଉ । ଏଥିରେ ଦୋଷ କ'ଣ ଅଛି ? ଧରନିଅ ମୁଁ ଚମରମାନଙ୍କ ଭିତରୁ ଜଣେ ।
ଶୋଭ : କାହିଁକ ବାବୁ, ତେମେ କାହିଁକ ଆମ ପରି ହବ—ଆମର ତ ଚୂଲି ଘୂଲ କିଛି ନାହିଁ ।
ମଦନ : ମୋର ବା ଅଛି କ'ଣ ? (ଘର ଭିତର ଆଡ଼କୁ ଲକ୍ଷ୍ୟ କରି) ଏମିତି ଭିତରେ ଏଇ ଉଦାଏ ବହି ।
ଶୋଭ : (ରହି ରହି) ବାବୁଙ୍କର ଭଣ······
ମଦନ : ଟ୍ୟୁକର କଥା କହୁଛ ତ ?
ଶୋଭ : ହଁ ।
ମଦନ : ନା, ମୁଁ ଟ୍ୟୁକର କରୁନ—ଘୁକଭ ମିଳନାହିଁ ।
ଶୋଭ : ଠାକୁରରେ କରନ୍ତୁ ବଡ଼ ଟ୍ୟୁକର ମିଳୁ ।···କୁମୀ, ଯଇକୁ ?
ମଦନ : କୁମୀ କ'ଣ ଯାକ ଭଉଣୀ ?
ଶୋଭ : ନା ।
କୁମୀ : ଜାଣିଲ ବାବୁ, ମୋ ବୋଉ ଶୋଭକାରୀକୁ ଧରମଝିଅ କରିଚ ।
ଶୋଭ : ଧରମଝିଅ କଅଣ ? ତାଙ୍କର ଆଶ୍ରାରେ ପଡ଼ିଚ ।
ମଦନ : କାହିଁକ···ତମ ନିଜର କ'ଣ କେହି ନାହାନ୍ତି ?
ଶୋଭ : (କିଛି ନ କହି ମୁଣ୍ଡ ତଳକୁ କରି ବସିଲ ।)
ମଦନ : କ'ଣ ହେଲ ? (ଟିକିଏ ରହି) ବାପା କିମ୍ବା ବୋଉ କେହି ନାହାନ୍ତି ?
ଶୋଭ : ନା··· କୁମୀ ଖାଇସାରିଲୁ ?
(ଶୋଭ ଅସ୍ୱସ୍ତି ବୋଧ କରୁଥାଏ । ମଦନ କିଛିକ୍ଷଣ ନୀରବ ରହି କ'ଣ ସେମିତି ଚିନ୍ତା କରିବାକୁ ଲଗିଲ—)
ମଦନ : ଆଚ୍ଛା ଶୋଭ···
ଶୋଭ : ବାବୁ ?
ମଦନ : ମୋର ଗୋଟାଏ କଥା ରଖିବ ?

ଶୋଭା : (କିଛି ବୁଝି ନ ପାରି) ବାବୁ !

ମଦନ : ବୁଝୁ ରହିବ ?

ଶୋଭା : (ମନରେ ଆଶଙ୍କା ଓ ଉଦ୍‌ବେଗ···ସେ ଠିଆ ହୋଇ ପଡ଼ିଲା) କି କଥା ବାବୁ ?

ମଦନ : ତୁମେ ଠିଆ ହୋଇ ପଡ଼ିଲ କାହିଁକି ? ବସ ।···ହଁ, ବସ । (ଶୋଭା ବସିଲା) ମୁଁ ତମ ଜୀବନର ଇତିହାସ ଶୁଣିବାକୁ ଚାହେଁ ।

ଶୋଭା : ଇ—ତି—ହାସ !

ମଦନ : ହଁ···ତୁମେ କିଏ—କେଉଁଠି ତୁମର ଘର—ତମର ଏ ଅବସ୍ଥା ହେଲା କାହିଁକି ? ଏଇ ସବୁ କଥା ···

ଶୋଭା : (ଟିକିଏ ରହି, ମୁହଁ ତଳକୁ କରି) ହେଲେ କାହିଁକି ବାବୁ, ଏସବୁ କଥା ଶୁଣିବ କାହିଁକି ? ଏତେ ଘରକୁ ମୁଁ ତ ଭିକ ମାଗି ଯାଉଛି—ଆଜି କେହି ତ ମତେ ଏକଥା ପଚାରି ନାହାନ୍ତି । ତମେ କାହିଁକି ପଚାରୁଛ ?

ମଦନ : (ଟିକିଏ ଇତଃସ୍ତତ ହୋଇ) ମୋ ମନ ଚାହୁଁଛି, ମୁଁ ପଚାରୁଛି ।

(ଏ ମଧ୍ୟରେ କୁନୀ ଖାଇସାରି ଭିତରେ ବାସନ ରଖିଦେଇ ଆସିଛି ।)

ଶୋଭା : ନାଇଁବାବୁ, ମୁଁ ଯାଉଛି । ଆ'ଲୋ କୁନୀ ।

ମଦନ : ବେଶ୍, ତମେ ଯଦି କହିବାକୁ ରାଜି ନୁହଁ···

ଶୋଭା : ମୋ କଥା ଶୁଣିବ କାହିଁକି ବାବୁ—କି ଲାଭ ତମେ ସେଥିରୁ ପାଇବ ?

ମଦନ : ସବୁ କଥାରେ ଲାଭ ଲୋକସାନର ହିସାବ କରାଯାଏନା । ମଣିଷର ମନ ବୋଲି ଗୋଟାଏ ଜିନିଷ ଅଛି । ଅଚ୍ଛା, ତମେ ଯାଅ ।

(ଶୋଭା ବିଚଳିତ ହୋଇପଡ଼ିଛି । ତା ଆଖି ଲୁହରେ ଢଳ ଢଳ । ସେ ନ ଯାଇ ଠିଆ ହୋଇ ରହିଲା ।)

ମଦନ : କ'ଣ ହେଲା ?

ଶୋଭା : ନାଇଁ ବାବୁ, ଏତେ ଭଲ ମଣିଷ ତମେ—ତମ କଥା ମୁଁ ରଖିବି । ମୋର ସବୁକଥା ମୁଁ କହିବି ।

(ମଞ୍ଚ ଅନ୍ଧକାର । କିଛି ସମୟ ପାଇଁ ଯନ୍ତ୍ର ସଙ୍ଗୀତରେ ସ୍ୱର ଭାସିଆସି କ୍ରମେ କ୍ଷୀଣ ହୋଇଗଲା । ମଞ୍ଚ ପୁଣି ଆଲୋକିତ ହେବାବେଳକୁ ଦେଖାଗଲା

(ମଦନ ଓ ଶୋଭା ଯଥାସ୍ଥାନରେ ବସିଛନ୍ତି । ଶୋଭା ମଦନକୁ ତା କାହାଣୀ ଶୁଣାଇଯାଉଛି । ତା ଆଖିରେ ଲୁହ । ମଦନର ମୁହଁରେ ଉତ୍ତେଜନା । ସେ ଉଠି ପଦଚାରଣ କଲା ।)

ମଦନ : ଶୋଭା ! (ଶୋଭା ଉଠି ଠିଆହେଲା) ମୁଁ ଜାଣେ । ଶୋଭା, ପୃଥିବୀରୁ ଏ ଅନ୍ୟାୟ ଅତ୍ୟାଚାର କେବେ ଲୋପ ପାଇବ ! ଯେଉଁମାନେ ଆଜ ତମକୁ ଆଣି ଏ ଅବସ୍ଥାରେ ଠିଆ କରେଇଛନ୍ତି—ଯେଉଁମାନଙ୍କ ପାଇଁ ତମେ ସନ୍ତାର ଉଜାଳୁଣୀ ଦେଉଚ, ସେମାନଙ୍କର ଆଜି ହୃଦଭୂମିର ଝରଣା ଛୁଟୁଥିବ···ଅଥଚ ତମ ଆଖିରେ ଲୁହ ।

(ଶୋଭାର ଆଖିରୁ ଲୁହ ପୋଛିବା ପାଇଁ ମଦନ ଉଦ୍ୟତ ହେଲାବେଳେ ଶୋଭା ମନ୍ତ୍ରଚଡା ହୋଇପଡ଼ିଲା ।)

ଶୋଭା : ବାବୁ !

ମଦନ : ନା, ମୁଁ ଜାଣୁଚି ତମର ଲୁହ ଅଛି ମୁଁ ପୋଛିଦେଲେ ସବୁଦିନ ପାଇଁ ପୋଛିହୋଇଯିବନି ।

ଶୋଭା : ମୋ ଭାଗ୍ୟ ତ ସେଇଆ ବାବୁ—ତାକୁ ପୁଣି ବଦଳେଇବ କିଏ ?

ମଦନ : ତମର ଭାଗ୍ୟ କାହାର ହାତ ତଳେ ନାହିଁ । ଯେଉଁମାନେ ତମର ଏ ଦୁର୍ଭାଗ୍ୟ ପାଇଁ ଦାୟୀ, ଦିନେ ସେଇମାନଙ୍କୁ ତମର ସୌଭାଗ୍ୟ ପାଇଁ ରାସ୍ତା ଛାଡ଼ିଦେବାକୁ ପଡ଼ିବ ।

ଶୋଭା : ବାବୁ !

ମଦନ : ଅଚ୍ଛା, ତମେ ବର୍ତ୍ତମାନ ଯାଅ ଶୋଭା—ଯାଅ ।

(ଶୋଭା ଓ ବୁମୀ ବିଦାୟ ନେଲେ । ମଦନ ବାହାରକୁ ଚାହିଁ ଠିଆ ହୋଇଥାଏ । ମଞ୍ଚ ଅନ୍ଧକାର ହୋଇ କିଛିକ୍ଷଣ ପରେ ପୁଣି ଆଲୋକିତ ହେଲା । କିଛିଦିନ ଅତିବାହିତ ହୋଇଯାଇଛି । ମଦନର ସେଇ ଘର—ସେଇ ଦୃଶ୍ୟ । ସମୟ—ପୂର୍ବାହ୍ଣ । ମଦନ ଘର ଭିତରେ ବସି ଲେଖୁଚି । ଝରକା ବନ୍ଦ । ବାହାରୁ ଅନନ୍ତର ସ୍ୱର ଶୁଭିଲା ।)

ଅନନ୍ତ : (ବାହାରୁ) ମଦନ—ମଦନ ।

ମଦନ : (କାଗଜ ଉପରୁ ଆଖି ନ ଉଠାଇ) କିଏ ?

ଅନନ୍ତ : (ବାହାରୁ) ସନ୍ଧ୍ୟାରେ ବର୍ତ୍ତମାନ ଟ୍ରକ୍ ଯାଉଛି । ଅତଏବ ଧୂଳି ଖାଇବାର ଆଉ ଭୟ ନାହିଁ । ଝରକା ଖୋଲ ।

ମଦନ : (ଝରକା ଖୋଲି) ଅନନ୍ତ ! ଆ'ସଇ ଭିତରକୁ ଆ' ।

ଅନନ୍ତ : ପ୍ରାୟ ଦଶଟା ବାଜିବ ଯେ—ଅଫିସ ଗିବନାହିଁ ? (କହୁ କହୁ ଭିତରକୁ ଆସିବ)

ମଦନ : ଏଇଟାତ ତୋ' ଅଫିସ ଯିବା ବାଟ ନୁହେଁ—ଏଣେ ଯଦିଥିଲୁ ବୁଝଦେ ?

ଅନନ୍ତ : ଛାଡ଼ ତୋର ପାଖକୁ—ତୋ' ଇଣ୍ଟରଭ୍ୟୁ କ'ଣ ହେଲା ?

ମଦନ : ଇଣ୍ଟରଭ୍ୟୁ ?

ଅନନ୍ତ : ଏଇ ତ୍ରିଶ ବଳ ଦିନ ତଳେ ତୋର ଗୋଟାଏ ଇଣ୍ଟରଭ୍ୟୁ ଥିଲା ନା ?

ମଦନ : ଓ, ହଁ । ମୁଁ ଯାଇନି ।

ଅନନ୍ତ : ଯାଇନୁ ? କାହିଁକି ?

ମଦନ : ଜାଣେ, କିଛି ଲାଭ ହେବନାହିଁ । ଯାଇଥାନ୍ତି କାହିଁକି ?

ଅନନ୍ତ : କି ଅଦ୍ଭୁତ କଥା ! ଘରେ ବସି ତୁ ସିଦ୍ଧାନ୍ତ କରିନେଲୁ ଯେ କିଛି ଲାଭ ହେବନାହିଁ ?

ମଦନ : ଆଜିକାଲି ଯୁଗରେ ଏମିତ ଘରେ ବସି ଅନେକ କଥାର ଏମିତ ଅଭ୍ରାନ୍ତ ସିଦ୍ଧାନ୍ତ କରିଯାଇପାରେ ।

ଅନନ୍ତ : କ'ଣ ମୁଁ ଯେ ତତେ କହିବ କିଛି ବୁଝିପାରୁନି । ହଁ ଶୁଣିଲି ପୁଣି ଟିଉସନ୍‌ଟା ଛାଡ଼ି ଦେଇଚୁ ?

ମଦନ : ମୁଁ ଛାଡ଼ିଦେଇନି—ମୋ'ଠୁ ଛଡ଼ାଇନିଆଯାଇଚି ।

ଅନନ୍ତ : ମାନେ ?

ମଦନ : "ମାନେ" ବୁ କହୁ ।

ଅନନ୍ତ : କହିବି ଅଉ କ'ଣ ? ଛାତ୍ରୀଟିକୁ ସାମାଜିକ ଜ୍ଞାନ ପରିବର୍ତ୍ତେ ହୃଏତ ସାଜନୈତିକ ଜ୍ଞାନ ପଢ଼ାଉଥିବୁ—କମ୍ଭା ଓଡ଼ିଆ ଭାଷାରେ ବହୁ ଟ'କାବନ୍ତ ଶବ୍ଦ ଥିବା ସ୍ଥଳେ, ଦଳିତ ନିଷ୍ପେଷିତ ପ୍ରପୀଡ଼ିତ ବଟାଡ଼ିତ ଅତ୍ୟାଚରିତ ପ୍ରଭୃତି ଶବ୍ଦର ବହୁଳ ପ୍ରୟୋଗ କରିବାକୁ ଛାତ୍ରୀଟିକୁ ଶିକ୍ଷା ଦେଉଥିବୁ ।

ମଦନ : ଯଦି ତାହାହିଁ ହୋଇଥାଏ, ତେବେ ଗୋଟାଏ ସ୍ୱାଧୀନ ଦେଶର ଜଣେ ସ୍ୱାଧୀନ ନାଗରିକର କ'ଣ ସେ ଅଧିକାର ନାହିଁ ?

ଅନନ୍ତ : ନିଶ୍ଚୟ ଅଛି । ବରଂ ସେ ଅଧିକାରରୁ ତୋତେ ବଞ୍ଚିତ କରିବାର ଅଧିକାର କାହାରି ନାହିଁ, ଯେହେତୁ ଗୃହିଣୀର ହୃଦୟସିଂହାସନ ନିଯୁକ୍ତ କରିବାର ଅଧିକାର ଗୃହସ୍ୱାମୀଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । କିନ୍ତୁ—ମଦନ, ନଈକୂଳରେ ବୁଲି ବୁଲି କେଉଁଦିନ ଏମିତି ନଈର ପ୍ରଖର ସ୍ରୋତକୁ ଦେଖି ଉତଲା ହୋଇଥିବୁ ? ଯଦି ପାରୁଛୁ ତ, ସବୁ ଭ୍ରାନ୍ତି ଛାଡି ନଈ ଭିତରକୁ ଡେଇଁ ପଡ଼ନ୍ତୁ କାହିଁକି ?

ମଦନ : ତୁ ମତେ ଉପହାସ ବା ପରିହାସ ଯାହା କର ଅନନ୍ତ, ଦିନକୁ ଦିନ ମନ ମୋର ଅଶାନ୍ତ ହୋଇଉଠୁଛି ।

ଅନନ୍ତ : ରକ୍ଷାକର ଭାଇ, ତୋ ଦାନ୍ତ ଅଶାନ୍ତ ହେବନି । କାରଣ, ଆଜିର ଅଶାନ୍ତ ମନ କାଲକୁ ପୁଣି ମଧୁର ହୋଇଉଠିବ—କିନ୍ତୁ ଦାନ୍ତ ଅଶାନ୍ତ ହେଲେ ରକ୍ଷାନାହିଁ । ହଁ, ମୋର ଗୋଟିଏ ଅନୁରୋଧ—ପ୍ରାୟ ମାସେକ ତଳେ ସେଇ ରବିବାରଦିନ ଆମ ଘରକୁ ତୁ ଯାଇଥିଲୁ । ଦୟାକରି ଆଜି ସନ୍ଧ୍ୟାରେ ଆ' ।

ମଦନ : ଆଜି ସନ୍ଧ୍ୟାରେ ?

ଅନନ୍ତ : ହଁ ।

ମଦନ : କ୍ଷମାକର ଅନନ୍ତ—ଆଜି ଯାଇପାରିବିନି, କାମ ଅଛି ।

ଅନନ୍ତ : ଟିଉସନ୍ ତ ନାହିଁ—ଆଉ କାମ କ'ଣ ?

ମଦନ : ଅଛି, ପରେ ଜାଣିବୁ ।

ଅନନ୍ତ : ବର୍ତ୍ତମାନ କରୁଛୁ କ'ଣ ?

ମଦନ : ଦେଖୁଛୁ, ପତ୍ର ଲେଖୁଛି ।

ଅନନ୍ତ : ହଉ ଲେଖ—ମୁଁ ଯାଉଛି । କିନ୍ତୁ କାଲି ସନ୍ଧ୍ୟାରେ ଆମ ଘରକୁ ନିଶ୍ଚୟ ଯିବାକୁ ହେବ—ବୁଝିଲୁ । ଯାଉଛି ।

(ଅନନ୍ତ ପ୍ରସ୍ଥାନ । ମଦନ କିଛିକ୍ଷଣ ସ୍ଥିରହୋଇ ବସି ପୁଣି ଲେଖାରେ ମନ ଦେଲା ।)

## ଦୃଶ୍ୟ—ଦୁଇ

[ସେଇ କଟକ ସହରର ଏକ ସମ୍ଭ୍ରାନ୍ତ ଅଞ୍ଚଳ । ଏକ ଶିକ୍ଷିତ ଉଚ୍ଚ ମଧ୍ୟବିତ୍ତ ପରିବାରର ବାହାଦ୍ୱାରର ଏକ ପରିଚ୍ଛନ୍ନ କୋଠରି । କୋଠରୀଟିରେ ମାତ୍ର ଉଚ୍ଚମାନର ଦୁଇଖଣ୍ଡି ଚଉକି ଓ ଗୋଟିଏ ଗ୍ଲେଟ ଟି-ପଏ ଅଛି ।

ସମୟ—ଶେଷ ପୂର୍ବାହ୍ଣ ।

ମାଧବୀ ଗୋଟିଏ ଚଉକି ଉପରେ ବସି ଗୋଟିଏ ମାସିକପତ୍ର ପଢ଼ୁଚି । ଜଣାଯାଉଥାଏ ସେ ଖୁବ୍ ଅନୁଧ୍ୟାନ ସହ କବିତାଟି ପଢ଼ୁଛି ଓ ପଢ଼ିବା ସଙ୍ଗେ ସଙ୍ଗେ ତା'ର ମୁଖମଣ୍ଡଳରେ କ୍ରମଶଃ ଏକ ଗାମ୍ଭୀର୍ଯ୍ୟ ମିଶା ତୃପ୍ତି ପ୍ରକାଶପାଉଛି । କିଛି କ୍ଷଣ ପଢ଼ିଲା ପରେ, ପଢ଼ା ବନ୍ଦ କରି ସାମ୍ନାକୁ ଚାହିଁ କ'ଣ ଯେମିତି ଚିନ୍ତା କଲା—ତା'ପରେ ପୁଣି ପଢ଼ାରେ ମନଦେଲା । ପଢ଼ା ଶେଷହେଲା । ଟିକିଏ ପରେ ପୁଣି ପତ୍ରିକା ଉପରେ ଆଖି ରଖି ଗୋଟିଏ କବିତାର ଦୁଇଟି ଧାଡ଼ି ମନକୁ ମନ ଆବୃତ୍ତି କଲା ]

ମାଧବୀ : (ଆବୃତ୍ତି)

"ଇଏ ଏକା ନୁହେଁ କେତେ ଯୁବକର ଯଉବନ ହଜିଯାଏ
ଏଇ ସମାଜର ରଥଚକ ତଳେ ଦବେ ଖାଲି ହାଏ ହାଏ ।"

(ଆବୃତ୍ତି ପରେ ଖୋଲା ପତ୍ରିକାଟିକୁ ଛାତି ଉପରେ ଶୁଆଇ ରଖି ଚୌକି ବାଡ଼କୁ ଢଳିପଡ଼ିଲା । ମୁହଁରେ ପୂର୍ବର ସେଇ ତୃପ୍ତି ମିଶା ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାବ । ଏଇ ଘର ଫାଟକ ପାଖରୁ ଦୁଇଥର କାର୍ ହର୍ଣ୍ଣ ଶୁଭାଗଲା । ହର୍ଣ୍ଣ ମାଧବୀର ଶ୍ରୁତିଗୋଚର ହେଉଛି—କିନ୍ତୁ ସେ ଶୁଣି ନଶୁଣିଲା ପରି ରହିଚି । ସେଣିକି ତା'ର ଧ୍ୟାନ ନାହିଁ । ଟିକିଏ ପରେ ଆସିଲେ ଉପେନ୍ଦ୍ର—ସେ ଆସି ଗୋଟିଏ ଚଉକିରେ ବସିପଡ଼ିଲେ ।)

ଉପେନ୍ଦ୍ର : ମାଧବୀ !

ମାଧବୀ : (ଈଷତ୍ ଚମକି) ବାପା ! ତୁମେ ଏଇ ଆସିଚ ?

ଉପେନ୍ଦ୍ର : ହଁ ତ ।

ମାଧବୀ : ଡ୍ରେସ୍ ଚେଞ୍ଜ୍ କରିବ ଏ ସବୁକୁ···

ଉପେନ୍ଦ୍ର : ଗାଡ଼ିରୁ ଓହ୍ଲାଇ, ତତେ ବାଲ୍‌କୋନିରେ ନଦେଖି ସିଧା ତୋ ରୁମ୍‌କୁ ଗଲି—ତା'ପରେ ଏଠିକି ।

ମାଧବୀ : (ଟିକିଏ ଚଳ୍ପାଇକିପଡ଼ି) ବାଲ୍‌କୋନି···

ଉପେନ୍ଦ୍ର : ସ୍ତବକ ରୁ ହୁଏତ ସରେ ନାହିଁ ।

ମାଧବୀ : ନାହିଁତ, ମୋର ଅଜ ଦେହ ବୁଲା କୁଆଡ଼େ ଗିବାର ନଥିଲା ।

ଉପେନ୍ଦ୍ର : ତତେ ଗାଡ଼ିର ହର୍ଣ୍ଣ ଶୁଭୁନ ? )

(ଏକଥାରେ ମାଧବୀର ମୁହଁ ଓ ଅଖିରେ ଫ୍ଲେନ୍ତ ମିଶା ଦୁଲଭ ଉପ ହବୁଛି ଉଠିଲା

ମାଧବୀ : ତମେ ଘରକୁ ଫେରିଲେ, ଗେଟ୍ ପାଖରୁ ଗାଡ଼ିର ହର୍ଣ୍ଣ ଶୁଣି ମୁଁ ପ୍ରାୟ ବାଲ୍‌କୋନିକୁ ଚାଲିଯାଏ ।

ଉପେନ୍ଦ୍ର : ଆଜି ଅଜି ?

(ଲାଜ ମିଶା ମୁହଁରେ ମାଧବୀ ମୁହଁ ତଳକୁ କରି)

ଉପେନ୍ଦ୍ର : କ'ଣ କରୁଥିଲୁ?

ମାଧବୀ : ପଢ଼ୁଥିଲି ।

ଉପେନ୍ଦ୍ର : ନାହିଁତ—ମୁଁ ଆସିଲାବେଳେ ତଳକ ବାଡ଼ରେ ଡ଼ଳାପଡ଼ୁଥିଲୁ ।

ମାଧବୀ : ଏଇ ମାତ୍ର ପଢ଼ା ଶେଷ କରି (କଥାର ସ୍ରୋତ ବଦଳାଇ, ହଠାତ୍) ବାପା, ତମ ପାଇଁ ଚା······

ଉପେନ୍ଦ୍ର : ମୁଁ ଆସିଲା ବେଳେ ତଳେ ଚା ପାଇଁ କହିଦେଇ ଆସିଚି । ରୁ ଆଗେ ଶୁଣ୍—ଆଜି ସାହିତ୍ୟ ସମାଜ କାର୍ଯ୍ୟକାରୀ କମିଟିରେ ଗୋଟାଏ ପ୍ରସ୍ତାବ ଗୃହୀତ ହୋଇଲା···

ମାଧବୀ : ପ୍ରସ୍ତାବ କଥା ମୁଁ କ'ଣ ଶୁଣିବି ?

ଉପେନ୍ଦ୍ର : ଶୁଣ୍, ପ୍ରସ୍ତାବ ହେଲା ଯେ, ସାହିତ୍ୟ ସମାଜ ତରଫରୁ ଗୋଟିଏ ଆଲୋଚନା ସଭା ହେବ । ବିଷୟବସ୍ତୁ—ସାହିତ୍ୟ ବନାମ ବ୍ୟାକରଣ—(ମାଧବୀ ନୀରବ ହୋଇ ରହିଲା) ବୁଝିଲୁ ?

ମାଧବୀ : ନାଁ ବାପା...

ଉପେନ୍ଦ୍ର : ପ୍ରସ୍ତାବରେ ମତେ ଅନୁରୋଧ କରାହୋଇଛି ଯେ, ଏଇ ସାହିତ୍ୟ ବନାମ ବ୍ୟାକରଣ ଉପରେ ମୁଁ ଗୋଟିଏ ପ୍ରବନ୍ଧ ଲେଖିବି ।

ମାଧବୀ : ବେଶ୍ ତ ଲେଖିବ !

ଉପେନ୍ଦ୍ର : ସାହିତ୍ୟ ବନାମ ବ୍ୟାକରଣ ଆଲୋଚନା କଥାଟା ଶୁଣି ତୁ ହସି ପକେଇଲୁ—ହେଇ ଆଲୋଚନା ପାଇଁ ମୁଁ ପ୍ରବନ୍ଧ ଲେଖିବି, ଏଥିରେ ତ ତୋର ହସରେ ଫାଟିପଡ଼ିବାର କଥା ! (ମାଧବୀ ମୁହଁ ତଳକୁ କଲା) ଠିକ୍ ତ ! ତୋତେ ତ ହସି ଅପେନାହିଁ—ତୁ କ'ଣ ହସିବୁ ! ତୋ'ପରି ଗୋଟାଏ ସିଂହାସନ୍ ଝିଅ...

ମାଧବୀ : ତମ ପ୍ରବନ୍ଧ କଥା କୁହ...

ଉପେନ୍ଦ୍ର : ଅବେ ମୁଁ ତ ମୋଟେ ସାହିତ୍ୟିକ ନୁହେଁ । ଜୀବନରେ ଧାଡ଼ିଏ କବିତା କି ଗଳ୍ପ କି ଉପନ୍ୟାସ ଲେଖିନାହିଁ ।

ମାଧବୀ : କିନ୍ତୁ ତମେ ଓଡ଼ିଆଭାଷାରେ ବହୁ...ବହୁ କବିତା, ଗଳ୍ପ, ଉପନ୍ୟାସ ପ୍ରବନ୍ଧ ଆଦି ପଢ଼ିଛ—ସେଇ ସତ୍ୟଯୁଗରୁ ଏ ପର୍ଯ୍ୟନ୍ତ ।

ଉପେନ୍ଦ୍ର : ଯିଏ ପଢ଼େ ସିଏ ପାଠକ—ସିଏ ସାହିତ୍ୟପ୍ରେମୀ ହୋଇପାରେ, ସାହିତ୍ୟିକ କେମିତି ହେବ ?

ମାଧବୀ : ବାପା ତମେ ଏ ପର୍ଯ୍ୟନ୍ତ ଏକୋଇଶିଟି ପ୍ରବନ୍ଧ ଲେଖିଛ ।

ଉପେନ୍ଦ୍ର . ସେସବୁ ଅଇନକାନୁନ୍, ଅର୍ଥନୀତି ଅଉ କାହିଁଟା ଜାତୀୟ ସମସ୍ୟା ସମ୍ପର୍କିତ ପ୍ରବନ୍ଧ—ସାହିତ୍ୟିକ ପ୍ରବନ୍ଧ ନୁହେଁ । ତୁ ଜଣେ ଲେଖିକା ନହେଲେ ବି ମୋ ଅପେକ୍ଷା ଅଧିକ ସିଂହାସନ୍, ଅଧିକ ଉଚ୍ଚଦରର ପାଠିକା । ତୁ କୁହ...

ମାଧବୀ : ମୁଁ କହୁଚି ବାପା, ପ୍ରବନ୍ଧ ମାନେ ବି ସାହିତ୍ୟ । ଝଙ୍କର ଗଛ ବାହିକ ବାଡରେ ଚୁଇଁରେ ଲଗିଯାଇ ଫୋଲ ହେଲେ ପୁଣି ଭୁଇଁରୁ ଉଠିଯାଏ—ଏ ବିଷୟ ଉପରେ ଲେଖା ଗୋଟିଏ ପ୍ରବନ୍ଧକୁ ବନେ ତମର ସାହିତ୍ୟ ସମାଜ ସାହିତ୍ୟିକ ପ୍ରବନ୍ଧ ବୋଲି ସ୍ୱୀକାର କରିଥିଲେ ।

ଉପେନ୍ଦ୍ର : ଛାଡ଼, ତୁ ସେତେବେଳେ ତଥ୍ୟ ଉପରକୁ ଆସିଲୁଣି ମୋର ଆଉ କିଛି କହିବାର ନାହିଁ...ହଁ ତୁ କ'ଣ ପଢ଼ୁଥିଲୁ ?

ମାଧବୀ : ଗୋଟାଏ କବିତା ।

ଉପେନ୍ଦ୍ର : ଏଇ ସଂଖ୍ୟା 'ନବୃତନ'ରେ ବାହାରିଛି ?

ମାଧବୀ : ହଁ ।

ଉପେନ୍ଦ୍ର : କ'ଣ କି କବିତା ଟିକେ ପଢ଼ିକି ଶୁଣେଇଲୁ ? ବୁଝିଲୁ ମା' ସ୍କୁଲରେ ଥିବା ପର୍ଯ୍ୟନ୍ତ ମୁଁ ବନଘାଘ ଯେତେ ଝଟିଲେବ ଭ୍ରାନ୍ତ କ'ଣ ଜାଣୁନଥିଲି । ଅବସର ନେଲା ପରେ ଟିକିଏ ଏପାଖ ସେପାଖ ହେଲେ ବେମିଳ ଭ୍ରାନ୍ତ ହେଉଛି...କବିତାଟା ପଢ଼ ଶୁଣା ।

ମାଧବୀ : ସତରେ ବାପା ତମେ ଭ୍ରାନ୍ତ ଦେଖାଯାଉଛ । ପୁଣି ଗୋଟାଏ ଲେଖା ଜଣେ ପଢ଼ି ଅନ୍ୟ ଜଣକୁ ଶୁଣେଇଲେ, ସେ ଲେଖା ତାହାଂର ମନକୁ ଛୁଇଁବ ନାହିଁ । ତମେ ଦୁ ଖାଇସାର, ଆରାମରେ ବସି ପଢ଼ିବ ।

ଉପେନ୍ଦ୍ର : ସୋଉ କବିତା ପଢ଼ିଲବେଳେ, ତୋତେ ମୋ ତାର୍‌ର ହର୍ତ୍ତି ଶୁଣିଲି ନାହିଁ, ତୁ ବାଲ୍‌କୋନକୁ ନଆସି ଚଉକି ଉପରେ ଡଳାପଡ଼ିଲୁ —ସେ କବିତା ପାଇଁ ତ ଦୁ ଖାଇବା ପର୍ଯ୍ୟନ୍ତ ଅପେକ୍ଷା କରି ପାରିବନାହିଁ । (ଅନନ୍ତ ଆସିବ)

ମାଧବୀ : ଅନୁଭାଇ ! (ଚୌକିରୁ ଉଠିଯାଇ) ବସ ।

ଅନନ୍ତ : ତୁ କୁଆଡ଼େ ଉଠିଲୁ ?

ମାଧବୀ : ତମେ ବସ ।

(ଅନନ୍ତ ଚଉକିରେ ବସିବ । ମାଧବୀ ଯାଇ ଉପେନ୍ଦ୍ରଙ୍କ ଚଉକି ପଛରେ ଠିଆହେବ ।)

ଅନନ୍ତ : ଦାଦା, ଆପଣଙ୍କର ସ୍ବ' ଟୁଡ୍ରୀ ମତେ ଦେଇଦେଲେ । ଆପଣଙ୍କ ସ୍ବ ଆମୃତ...(ପତ୍ରିକା ଉଠାଇ) ଏଇ ସଂଖ୍ୟା ନବୃତନ ?

ମାଧବୀ : ହଁ ।

ଅନନ୍ତ : ପୁଣି ପଢ଼ିବାଟା ସରୋହେଲାଣି ?

ମାଧବ : ଏଇ ଘଣ୍ଟାଏ ହେବ ତ ବହିଟା ପାଇଲି ।

ଅନନ୍ତ : ଏ ସଂଖ୍ୟାରେ ମଦନ ବାବୁଙ୍କ......

ମାଧବ : ହଁ ପଢ଼ୁଛି —ମଦନ ବାବୁଙ୍କ "ଶୋଷ" କବିତାଟା ପଢ଼ୁଛି ।

(କଥା କହୁବା ସଙ୍ଗେ ସଙ୍ଗେ ମାଧବର ମୁହଁରେ ଯେପରି ଚିନ୍ତାରେଖା ଫୁଟି ଉଠିଲା)

ଅନନ୍ତ : କ'ଣ ହେଲା ? ତୋର ମୁହଁ ଦେଖୁଦେଉଛି, କବିତାଟା ପଢ଼ି ତୁ ଯେମିତି କିଛି ଚିନ୍ତା କରୁଛୁ !

ମାଧବ : ଶୁଣ ଅନନ୍ତ ! ନବ ମଦନ ବାବୁ ଭଲ ଲେଖନ୍ତି । ବାସ୍ତବରେ ତାଙ୍କର ନାଁ ଅଛି—ତାଙ୍କ କବିତାର ପାଠକ ଅଛନ୍ତି । ଯାହା ପାଇଛି, ତାଙ୍କ କବିତା ମୁଁ ପଢ଼ିଛି । କିନ୍ତୁ ଏ କବିତାଟା···

ଅନନ୍ତ : ହଁ, ଏ କବିତାଟା···

ମାଧବ : ପ୍ରୋଲେଟେରିଏଟ ଶ୍ରେଣୀ ସଂଘର୍ଷକୁ ଆଖି ଆଗରେ ରଖି ଏ କବିତା ଲେଖାହୋଇଛି ସତ, କିନ୍ତୁ କବିତାଟିର ପ୍ରାଣରେ ଏକ ଭିନ୍ନ ଅନ୍ତଃସ୍ୱର ରହିଛି ।

ଅନନ୍ତ : ଏଥିରେ ତୋର ଚିନ୍ତା କରିବାର କ'ଣ ଅଛି ?

ମାଧବ : (ଅଳ୍ପ ହସି) କବିତାର ପାଠକ ମୁଁ—କବିତାରୁ କିଛି ଚିନ୍ତା କରିବାକୁ ଖୋରାକ ମୁଁ ଯଦି ପାଇବି, ଚିନ୍ତା କରିବି ନାହିଁ ?

ଅନନ୍ତ : ଓ···

ମାଧବ : ମୋର ମନେହୁଏ ଗୋଟିଏ ଶ୍ରମିକ ବାଳକାର ହୃଦୟପଦ୍ମର କଳିଟି ଛତରଛତ ହୋଇଯିବା ଘଟଣା କବିଙ୍କୁ ଖୁବ୍ ବ୍ୟଥିତ କରିଚି । ଆଉ ସେଇ ବ୍ୟଥାରୁ ଜନ୍ମ ନେଇଚି ମଦନ ବାବୁଙ୍କର ଏ କବିତା—'ଶୋଷ' ।

ଅନନ୍ତ : ତାହେଲେ···ତାହେଲେ (ହସି ହସି ମୁହଁରେ) ମଦନର ଏ କବିତାର ଜନ୍ମ ଅଛି, ପୃଥିବୀର ସେଇ ପ୍ରଥମ କରୁଣ ରସର କବିତା—

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍‌କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତଂ···

ମାଧବୀ : ମୁଁ ମୋ କଥା କହୁଚି । ମୁଁ କହୁଚି ମଦନ ରାଏ ସ୍ତ୍ରୀ'ପୁରୁଷଙ୍କୁ ଏମିତି କହିଚି......

ଅନନ୍ତ : (ନିମ୍ନସ୍ୱରରେ) ଏମିତି ଭଲ କହିଚି ନା...

ମାଧବୀ : (ଯେମିତି ଅନନ୍ତର ପ୍ରଶ୍ନ ସେ ଠିକ୍ ଶୁଣିନି) ଗୋଟାଏ ବହିରେ ପଢ଼ି ନିଜକୁ ଏମିତି ଧ୍ୱଂସିବାର ସ୍ତ୍ରୀ'ପୁରୁଷଙ୍କୁ ମୋର ମନେପଡ଼ୁନି ।"

(ସୁନ୍ଦର ଚ୍ୟା'ଆଣି ଉପେନ୍ଦ୍ରଙ୍କୁ ଦେଲା)

ସୁନ୍ଦର : (ମାଧବୀଙ୍କୁ) ତଳେ ବଡ଼ବୋଉ ତୁମକୁ ଖୋଜୁଚନ୍ତି ଦେଇ ।

ଉପେନ୍ଦ୍ର : ତୋ' ବୋଉ ଆସିଚନ୍ତି ଅନୁ ?

ଅନନ୍ତ : ବଡ଼ବୋଉ ଆସିଚି, ତମେ ଏଯାଏଁନ୍ତି ମତେ କହୁନ...

(ପଛେ ପଛେ ସୁନ୍ଦରଗଲା । ଉପେନ୍ଦ୍ର ଚ୍ୟା' ଖାଇଲେ)

ଉପେନ୍ଦ୍ର : କହିଚୋଟା ପ... ମାଧବୀ ଭିତରେ ଭିତରେ ଯେମିତି ବେଶ୍ ଏକ୍ସାଇଟେଡ଼୍ ହୋଇପଡ଼ିଚି ।

ଅନନ୍ତ : ଆପଣ ଅଉ ମାଧବୀ ପରି ମୁଁ ତ ଏମିତି ଉତ୍ସାହିତ ପଢ଼ାପଢ଼ି କରେନା । ମଦନର ଲେଖା ମୁଁ କେବେ ବେମିତି ପଢ଼ିଚି । ମୁଁ ଜାଣେ ସେ ଭଲ ଲେଖେ । କିନ୍ତୁ ଏ କହିଚୋଟା ପ... ମୋର ଏଇଆ ମନେ ହେଉ ଯେ, ଏ ଗାଏ ଦେ ଏମିତି ଚମତ୍କାର ଲେଖା ଲେଖୁ ପାରୁଥିଲା କାହିଁକି ?

ଉପେନ୍ଦ୍ର : ମଦନ ରାଏଙ୍କ ସହିତ ପରିଚୟ ଅଛି ?

ଅନନ୍ତ : ହିଁ, ସେ ମୋର ବନ୍ଧୁ ।

ଉପେନ୍ଦ୍ର : ବନ୍ଧୁ ! କାହିଁ କେବେ ତ ତୁ ଏକଥା ଅନୁକୁ କହିନୁ ?

ଅନନ୍ତ : ଦାଦା, ସ୍ତ୍ରୀ' ପୁରୁଷଙ୍କୁ କେବେ ତ ତା ବିଷୟରେ ଏଠି କିଛି ଆଲୋଚନା ହୋଇନ ।

ଉପେନ୍ଦ୍ର : ଓ ହୋ ! କଣ କରନ୍ତି ?

ଅନନ୍ତ : ଭଲ ଛାତ୍ର ଥିଲା । ଏମ୍.ଏ. ପର୍ଯ୍ୟନ୍ତ ଆମେ ଦୁହେଁ କ୍ୟାସ୍ ମେଟ୍ ଥିଲୁ । ବେଳେ ବେଳେ ଆମ ଘରକୁ ଆସିଚି ।

ଉପେନ୍ଦ୍ର : ଏବେ କଣ ଅଧ୍ୟାପକ ?

ଅନନ୍ତ : ଅଧ୍ୟାପକ···ନା । ବେକାର । ମୃକଣ୍ଠ କଣବା ନକଣବା ସମ୍ପର୍କରେ ତା'ର ଗୋଟେ ଅଦ୍ଭୁତ ଖିଆଲ ଉଦ୍ଭଟ ।

ଉପେନ୍ଦ୍ର : କବିତାଟା ପଢ଼ିବା ପୂର୍ବରୁ କବିଙ୍କ ସମ୍ପର୍କରେ ଏ ଆଲୋଚନା ମନ୍ଦ ଲାଗୁନ ।

ଅନନ୍ତ : ଆପଣେ ତା' ଲେଖା ପଢ଼ିଥିବେ !

ଉପେନ୍ଦ୍ର : ଯା'ହା ପଢ଼ିଛୁ ସେଥିରୁ ମନେହୁଏ ସେ— ସେ ହୁଏତ ପ୍ରୋଗ୍ରେସିଭ୍ ଆଇଡ଼ିଓଲଜିର······

ଅନନ୍ତ : ଘୋଳଘୋଳି ଲେଫ୍ଟିଷ୍ଟ ଆଇଡ଼ିଓଲଜି ଭଳିଲେ ବି ଚଳିବ ।
(ଧୂର୍ତ୍ତିକର ହସ)

ଉପେନ୍ଦ୍ର : ହଁ, ସ୍ୱଭାବ କ'ଣ ଏମିତ ବୁଦ୍ଧି ଅସିଚନ୍ତି ?

ଅନନ୍ତ : ନାହିଁ ତ । ବୋଉ ପାଖରେ ଖୁଡ଼ୀର କାଲ୍ ଫୋନ୍‌ରେ କ'ଣ କଥାବାର୍ତ୍ତା ହୋଇଥିବ । ବୋଉ ଅସିଚ—ବୋଉ ପାଖରେ କାନୁନ୍‌ଗୋ ଇଣ୍ଡଷ୍ଟ୍ରୀଜ୍‌ର ଚନ୍ଦ୍ରକାନ୍ତ କାନୁନ୍‌ଗୋ, ଯିଏ କମ୍ପ୍ୟୁଟର ଲାଇସେନ୍‌ସ ପାଇଚନ୍ତି· ···

ଉପେନ୍ଦ୍ର : ବୁଝିଲି···

ଅନନ୍ତ : ତାଙ୍କର ସ୍ତ୍ରୀ ଅସିଚନ୍ତି—ମାଧବୀର ବିବାହ ପ୍ରସଙ୍ଗରେ କ'ଣ କଥାବାର୍ତ୍ତା···

ଉପେନ୍ଦ୍ର : ଅଚ୍ଛା ଅଚ୍ଛା । (ଅନନ୍ତ ଉଠିଲା) ତୁ କୁଆଡ଼େ ଉଠିଲୁ ?

ଅନନ୍ତ : ମୁଁ ଯାଉଛି—ଘଣ୍ଟାଏ ପରେ ଆସି ସେମାନଙ୍କୁ ନେଇ ଯିବି ।

ଉପେନ୍ଦ୍ର : ହଉ ତୁ ଯା । (ଅନନ୍ତର ପ୍ରସ୍ଥାନ) ମୋର ସ୍ପୃହା ଶିଅତ ସବଳ—ମାଧବୀ କହିବା ଅନୁଯାୟୀ ଏଥର ଆସରରେ ବହି ମଦନଶ୍ରୀଏଙ୍କ କବିତାଟା ପଢ଼ାଯିବ ·· (ପକ୍ଷ ଡା ଖୋଲି ପଢ଼ିଲେ)—ଶୋକ—

## ଦୃଶ୍ୟ - ତିନ

[ମଦନର ସେଇ ଘର । ପୂର୍ବବର୍ତ୍ତୀ ଦୃଶ୍ୟରେ ଉପେନ୍ଦ୍ରଙ୍କ କଣ୍ଠରେ "ଶୋଭା" ଉଚ୍ଚାରଣ ସହିତ ପ୍ରାୟ ସମତାଳ ରକ୍ଷାକରି ଦେଖାଗଲା ଶୋଭା ଘର ଭିତରକୁ ପଶିଆସୁଛି, ଆଉ ଘର ଭିତରେ ଅଛି ମଦନ । ଶୋଭାର ମୁହଁରେ ହର୍ଷଭାବ—ପରିଧାନ ଅପେକ୍ଷାକୃତ ଭଲ ଶାଢ଼ୀ ଖଣ୍ଡିଏ । ମଦନର ପରିଧାନରେ କିଛି ପରିବର୍ତ୍ତନ ନାହିଁ । କିନ୍ତୁ ଆଖି ଦୁଇଟିରେ ବିପୁଳ ଆଶା ଆକାଂକ୍ଷାର ପ୍ରତିଚ୍ଛବି ।··· ସମୟ ରାତ୍ରି ।)

ମଦନ : ଏତେ ଡେରି କଲ ? ରାତି କେତେ ହେଲାଣି ?

ଶୋଭା : କଣ ଆଉ କରିବି ? ସାତ ମାସ କି ଆଠମାସ ତଳେ—ହେଇ ସେତେବେଳେ ତେମେ ମୋ କଥା କ'ଣ ସବୁ ଲେଖୁଥିଲ···

ମଦନ : କବିତା ।

ଶୋଭା : ହଁ କବିତା । ସେତିକି ବେଳେ ଯାହା ତମ ପାଖରେ ଭେଟ ହେଉଥିଲି । ଇସ୍ତା ଭିତରେ ମୁଁ କେଜାଣି କେତେଥର ଆସି କେତେଥର ନେଉଛି ଯାଉଛି ମୋର ମନେନାହିଁ । ବୋଧହୁଏ ତେମେ ନ ଥାଅ—ବୋଧହୁଏ ଏପାଖରେ ସେପାଖରେ କେଉଁ ଥାଅନ୍ତି । ମନ ଖାଲି ହାଉଁପାଉଁ ହେଉଥାଏ—କ'ଣ ମୋ କଥା ଲେଖୁଛ କିଏ ଜାଣିଥାନ୍ତି, ଶୁଣିଥାନ୍ତି । ଆଜି ସକାଳେ ଯୋଗକୁ ତମକୁ ଭେଟିଲି ।

ମଦନ : ହଁ । ମୁଁ ତମ କଥା ଯାହା ଲେଖିଛି, ସେଇ କଥା ସବୁ ଶୁଣାଇବାପାଇଁ ତମକୁ ଆଜି ରାତିରେ ଆସିବାକୁ କହିଥିଲି ସେ······

ଶୋଭା : କ'ଣ କରନ୍ତି କହିଲ ? ଡେରି ହେଇଗଲା । ···ବାବୁ, ସତରେ ମୋ କଥା ଲେଖିଛ ?

ମଦନ : ହଁ । (ଶୋଭା ପିନ୍ଧିଥିବା ଶାଢ଼ୀକୁ ଲକ୍ଷ୍ୟ କଲା)

ଶୋଭା : ମୋର ଏ ଶାଢ଼ୀ···ଶାଢ଼ୀକୁ ଦେଖିଛ ବାବୁ ?

(ମଦନ କିଛି କହୁନଥାଏ । ଶୋଭାର ମୁହଁ କରୁ ଉଜ୍ଜ୍ୱଳ ହୋଇ ଉଠୁଥାଏ ।)

ଶୋଭା : ସେଇ ସେଦିନ ପଚୁଲେ ମୋ କଥା ତମକୁ କହୁଥିବାବେଳେ ମୁଁ ତମକୁ କହିଥିଲି···

ମଦନ : କ'ଣ ?

ଶୋଭା : (ମୁହଁ ତଳକୁ କରି) ଏଇ ଶାଢ଼ୀ ମନୁଆ ମତେ ଦେଇଥିଲା—

ମଦନ : ଓ···

ଶୋଭା : ସେଇ ଦିନୁ ସେମିତି ସାଇତି ରଖିଥିଲି ।

ମଦନ : ଆଜି ପିନ୍ଧିଲ କାହିଁକି ?

ଶୋଭା : (ଧୀର ଗଳାରେ) ଚିହ୍ନିବ ··

ମଦନ : (ଟିକିଏ ରହି) ହୁଁ ···ଅଚ୍ଛା ଶୋଭା, ତୁମେ···ତୁମେ ପାଠ ପଢ଼ିଛ ?

(ଶୋଭା କେବଳ ଏକାନ୍ତ କ୍ଷୁବ୍ଧ ଭରା ଦୃଷ୍ଟିରେ ଚାହିଁ ରହିଲା ।)

ମଦନ : କ'ଣ ହେଲା ? କିଛି କହୁନ ଯେ ? ପଢ଼ାପଢ଼ି କରିଛ ?

(ଶୋଭା ମଥା ହଲାଇ ମନାକଲା ।)

ମଦନ : ଅଦୌ ପଢ଼ିନ ?

ଶୋଭା : (କ'ଣ କିଛି ଭାବି) ମତେ ଛ'କି ପାଞ୍ଚ ବରଷ ହୋଇଥିବ, ପଢ଼ିବାକୁ ଗଲି । ତହିଁକି ପୁଣି ଦିନେ ଦିନେ ପତର ତୋଳିବାକୁ ଯିବା—ଛେଳି ହଜିଗଲେ ବଣକୁ ଖୋଜିବାକୁ ଯିବା—କିଛି କାମ ନଥିଲେ ଘଟିବାକୁ ଯିବ ।

ମଦନ : ତା'ହେଲେ ପଢ଼ାପଢ଼ି କରୁଥିଲ ?

ଶୋଭା : (ଭାବି) ଆଠବରଷ···ହଁ ମତେ ଆଠ କି ନ'ବରଷ ବେଳକୁ ବୋଉ ମଲା—ଘରକାମ କଲି ।

ମଦନ : ଆଉ ପଢ଼ିବାକୁ ଯାଇନ ?

ଶୋଭା : ନାହିଁ । ମତେ ବାରବରଷ ବେଳକୁ କାରଖାନାରେ ଗୁଜରାଣ କଲି ।

ମଦନ : ହୁଁ···ଅଚ୍ଛା ଯାହା ପଢ଼ିଛ କିଛି ମନେଅଛି ?

ଶୋଷ : କେଜାଣି ?
ମଦନ : (ହସ ମୁହଁରେ) ତମେ ତ ପଢ଼ିଲ—ଅଉ ପୁଣି କଏ ଜାଣିବ ?
(ଶୋଷର ମୁହଁ ସେମିତ ଟିକଏ ଶୁଖିଗଲା)
ଶୋଷ : ଟିକଏ ଟିକଏ ହେଜ କର ଫେଲେ ପଢ଼ିବ ।
ମଦନ : ବେଶ୍—ନଅ, ସ୍ବାଁକୁ ପଢ଼ ।
(ମାସିକ ପତ୍ରିକାଟି ଖୋଲି ଶୋଷ ହାତକୁ ଦେଲା)
ଶୋଷ : (ପତ୍ରିକାରେ ଆଖି ବୁଲାଇ) ଏତେ ସାନ ସାନ ଅକ୍ଷର......
ମଦନ : ନାହିଁ, ସାନ ଅକ୍ଷର ନୁହେଁ । ଉପରେ ଏ ଯେଉଁ ବଡ଼ ଅକ୍ଷର ହୋଇଛି ଅଳ୍ପ ପଢ଼ ।
(ଶୋଷ ପତ୍ରିକା ପୃଷ୍ଠାକୁ କିଛିକ୍ଷଣ ଚାହିଁଲା—ତା'ପରେ ମୁଗ୍ଧ ଦୃଷ୍ଟିରେ ମଦନକୁ ଚାହିଁରହିଲା)
ମଦନ : ପଢ଼...
(ଏଥର ଶୋଷ ଲାଜେଇଯାଇ ଖୋଲା ପତ୍ରିକାଟି ତାଙ୍କ ମୁହଁ ଲୁଚେଇଲା)
ମଦନ : ମୁହଁ ଲୁଚେଇଲ କାହିଁକି ? ପଢ଼, ମୁଁ ଶୁଣେ ।
(ମୁହଁ ଉପରୁ ପତ୍ରିକା ହଟେଇ ଆଣି, ଶୋଷ ମଦନକୁ ଯେପରି ଏକ ଅନୁରାଗପୂର୍ଣ୍ଣ ଦୃଷ୍ଟିରେ ଚାହିଁଲା । ତା'ପରେ ବାହ୍ୟ ଉଚ୍ଚାରଣ ନକରି କେବଳ ପାଟି ଓ ଓଠ ଚାଳନାରେ ଜଣାଇଦେଲା ଯେ ପତ୍ରିକାରେ ଲେଖା ହୋଇଛି 'ଶୋଷ' ।)
ମଦନ : (ଖୁସିରେ) ବୁଝିଲି, ତମେ ପଢ଼ିପାରିଛ...ପାଟିଖୋଲି କୁହ ମୁଁ ଶୁଣେ ।
ଶୋଷ : (ଆଣ୍ଠୁମାଡ଼ି ମଦନକୁ ପ୍ରଣାମ କରି—ତା'ପରେ ଉଠି ଠିଆହୋଇ) ମୁଁ ଜାଣିଚ, ଏମିତ କଥା ସବୁରେ ଠାକୁର ଦେବତାଙ୍କ ନା ଛପା ହୋଇଥାଏ —ତେମେ ମୋ ନାଁ ଛପିଚ !
(ମଦନ କିଛିକ୍ଷଣ ହତବନ୍ଧନ ହୋଇପଡ଼ିଲା । ତା'ପରେ ପୁଣି ସ୍ବାଭାବିକ ଅବସ୍ଥାକୁ ଫେରିଆସିଲା)
ମଦନ : ଖାଲି ତମ ନାଁ ନୁହେଁ ଶୋଷ—ତମର କଥା ବହୁ ଏ କବିତାରେ ଲେଖିଛି—ପୁଣି ରୂପ ଲେଖିଛି—ବହୁ ଲେଖିଛି । ଅନେକ.. ଅନେକ

ସେବ ତମ କଥା ପଢ଼ୁଚନ୍ତି । (ହଠାତ୍ ଅଟକଯାଇ) ମୁଁ ଭୁଲଯାଇଥିଲି ଶୋଭା—ତମର କଥା ସବୁ ମୁଁ ଗୋଟାଏ ଖାତାରେ ଲେଖି ବମ୍ବେ ପଠେଇ ଥିଲି । ସେଥିରୁ କିଛି ଟଙ୍କା ପାଇଛି । (ଟଙ୍କା ବାହାରକରି) ନିଅ ରଖ ।

ଶୋଭା : (ଆଶ୍ଚର୍ଯ୍ୟରେ) ମୁଁ କାହିଁକି ଟଙ୍କା ରଖିବି ?

ମଦନ : ରଖ—ତମର କଥା ଲେଖିଥିଲିତ ! (ଟଙ୍କା ଶୋଭା ହାତରେ ଦେଲା)

ଶୋଭା : (ଟିକିଏ ରହି) ଗୋଟେ କଥା କହିବି—ଆନ ମଣିବ ନାହିଁ ?

ମଦନ : କୁହ ।

ଶୋଭା : ସେ···ଇ ଯୋଉଦିନ ମୁଁ ଏ ଝରକା ପାଖରେ ଠିଆହେଇ ଭିକ ମାଗିଲି—ତେମେ ପ'କେଟି ଅଣ୍ଡାଳିଲ—ପଇସା ପାଇଲ ନାହିଁ—ପଇସା ନଥିଲି ବୋଲି ଖାଇବାକୁ ଡାକିଲ, ସେ କଥା କ'ଣ ମୋ ଜୀବ ଥିବା ଯାଏ ପାଶୋରି ଯିବ ? ଆଜି ସକାଳେ ବୁଲିକି କଥା ପଚାରିଲି ଯେ, ବୁଲିକି କରିକି କହୁଥିଲେ । ପଇସା ନହେଲେ ତେମେ ଚଳିବ କେମିତି ? ଆମେ ଭିକାରି ଲୋକ, ପ.ଞ୍ଚଘର ବୁଲି ଆଇଲେ ବେଲାକରେ ଅହାର ମିଳିଯିବ । ତେମେ ତ ତା' କରିପାରିବ ନାହିଁ—ଏ ଟଙ୍କା ତେମେ ରଖ । (ମଦନର ପକେଟରେ ଟଙ୍କା ରଖିଦେଲା)

ମଦନ : ଶୋଭା ! !

ଶୋଭା : ମୋ କଥା ନେଇଁ ତେମେ ଟଙ୍କା ପାଇଚ, ସେଇ ମୋର ନକ୍ଷେ ଟଙ୍କା । ଦୁଃଖବାଳାର କର— ଏମିତ ପଇସା କମେଇ — ଭଲରେ ରହ— ଯେତେବେଳେ ମୋ ଆଖୁ ଲା ଭଗ୍ନିଙ୍କର ଭରଦେବ ଯେ ମୁଁ ଖୁସିହେବି । ହିଁ, ଆଉ କ'ଣ ସବୁ ମୋ କଥା ନେଖିଚ ପଢ଼, କୁହ ।

ମଦନ : ହିଁ, ଶୋଭା, ତମର ସେଇ କରୁଣ କାହାଣୀ ନେଇ ଲେଖିଚ ନାଟକ ।

ଶୋଭା : ନାଟକ ! !

ମଦନ : ହିଁ, ନାଟକ । ନାଟକ ଦେଖିନ ତମେ ? ଏଇ ଥିଏଟରମାନଙ୍କରେ ଯୋଉ ନାଟକ ହୁଏ ?

ଶୋଭା : ଦେଖିନାହିଁ ପୁଣି ! କାରଖାନାରେ ସବୁ ଦଶଗ୍ରବେଲକୁ ଥେଟର ହୁଏ । ଦେଖୁ ଦେଖୁ କେତେବେଳେ ହସି ହସି ଗଡ଼ିଯିବ ତ କେତେ-ବେଳେ ଆଖିରୁ ଲୁହ ବୋହିଯିବ ।

ମଦନ : ହିଁ, ସେମିତିଆ ନାଟକ ମୁଁ ଲେଖିଛି ।

ଶୋଭା : (ଅଳ୍ପ ହସି) ନା—ଟ—କ ! ଗୋଟାଏ ନାଟକରେ ତ ରାମ ସୀତା ରାବଣ ବାହାରିଥିଲେ—ରାବଣ ସୀତାଙ୍କୁ ହରିଇ ନେଲା ।...ବାବୁ, ତମର ଏ ନାଟକରେ କିଏ ସବୁ ବାହାରିବେ ?

ମଦନ : ସେଇମାନେ—ତମ ଗାଁରେ ପ୍ରଥମ ଦେଖାହେଲା ଦିନ ତମେ ଯାହା ଯାହା ମତେ କହୁଥିଲ—ତମେ ଯୋଉ କାରଖାନାରେ କାମ କରୁଥିଲ ସେକଥା—ତମ ବୁଢ଼ୀ ମାଉସୀ, ବଳୁ ଦର୍ଜାର, ତମର ବାପା ଭାଇ, ସାନ ପାହାଡ଼ ଆଉ ମନୁଷ୍ୟ—ପୁଣି ଏମାନଙ୍କ ସଙ୍ଗରେ ଆହୁରି ଅନେକ...

(ଏମାନଙ୍କ ନାଁ ଶୁଣୁ ଶୁଣୁ ଶୋଭାର ସମସ୍ତ ଅଙ୍ଗରେ ଯେମିତି ଏକ ଭୌତିକ ଶକ୍ତି ସଞ୍ଚାର ହେଉଯାଉଛି । ମୁହୂର୍ତ୍ତକରେ ମୁହଁ ବିବର୍ଣ୍ଣ ହୋଇଯାଇ ପର ମୁହୂର୍ତ୍ତରେ ଉତ୍ତେଜନାଦୀପ୍ତ ହୋଇଉଠିଛି ।)

ଶୋଭା : (ଆବେଗମୟ କଣ୍ଠରେ) ମୋ କାରଖାନା ଜୀବନ...ବାପା...ଭାଇ ବଳୁ ଦର୍ଜାର ...ବୁଢ଼ୀ ମାଉସୀ...ଅଉ ମ—ନୁଷ୍ୟ...

(ଶୋଭା ଆଖିରେ ଲୁହ)

ମଦନ : ଏଇ ପୁଣି ତମେ କାନ୍ଦିଲଣି ! ସେ ଦିନ ତମ କଥା କହୁଥିବେଳେ କାନ୍ଦୁଥିଲ—ଆଜି ମୋ କଥା ଶୁଣୁ ଶୁଣୁ ଏଇ ତମେ କାନ୍ଦିଲଣି । ମୁଁ ତେବେ ଏ ନାଟକ...

ଶୋଭା : (ଗୋଟାଏ ଆବେଗରେ ନିଜର ଦୁଇ ହାତମୁଠାରେ ମଦନର ହାତକୁ ଧରି) ନାହିଁ ବାବୁ, ମୁଁ ଆଉ କାନ୍ଦୁନି—ଆଉ କାନ୍ଦିବି ନାହିଁ । ତମେ ମତେ କହ ନାଟକ କୋଉଦିନ ହେବ, କିଏ ଏଥିରେ ବାହାରିବେ । ମୁଁ...ମୁଁ ମୋ କଥା...

ମଦନ : (ଶୋଭାର ହାତମୁଠା ଉପରକୁ ଦୃଷ୍ଟି ଫେରାଇ) ତମ କଥା...

ଶୋଭା : (ଅବସ୍ଥା ବୁଝିପାରି) ଏଁ ! (ହାତମୁଠା ମୁକ୍ତ କରିନେଇ)

ମଦନ : ଶୁଣ ଶୋଭା, ନାଟକ ହେବାଦିନ ତ ହେବ—ମୁଁ ଆଜି ତମକୁ କାହିଁକି ଡାକିଛି ଜାଣ ?

ଶୋଷ : (କିଛି ବୁଝି ନ ପାରି କରି) କାହିଁକି ?

ମଦନ : କାଟକରେ ମୁଁ ଯାହା ଯାହା ଦେଖିଛି, ସେଥିରୁ ଗୋଟାଏ ଦୁଇଟା କଥା ମୁଁ ତୋତେ ଶୁଣେଇବି···ଶୁଣିବ ?

ଶୋଷ : ହଁ ବାବୁ ଶୁଣିବି । ଯେତେ ରାତି ହେଉ ପଛକେ ଏଠି ବସି ମୁଁ ଶୁଣିବି ।

ମଦନ : ଦେଖ୍, ଶୁଣ । ଯୋଉଦିନ ତମ ବୁଢ଼ାବାପାକୁ ସେମାନେ ଡାକ୍ତର-ଖାନାରୁ ବାହାର କରିଦେଲେ—ତମେ ଆଉ ତମ ଭାଇ ଗଣେଶ ଡାକ୍ତରଖାନାରୁ ବାପାକୁ ନେଇ ଆସିଲ (କାଟକର ପାଣ୍ଡୁଲିପି ଉପରେ ଆଖିରଖି) ସେଇ ଘଟଣାରୁ ଏ ଦୃଶ୍ୟର ଆରମ୍ଭ ।

(ଫେଡ୍ ଆଉଟ୍ ଭଙ୍ଗୀରେ ଆଲୋକ ନିର୍ବାପିତ ହୋଇ ମଞ୍ଚ ଅନ୍ଧକାର ହେଲା । ସେମିତି ଫେଡ୍ ଇନ୍ ଭଙ୍ଗୀରେ ଯନ୍ତ୍ରସଙ୍ଗୀତର ସ୍ୱର କ୍ରମେ ଉଚ୍ଚତର ହୋଇ ଏକ ସଂଘର୍ଷମୂଳକ ଉତ୍ତୋଳିତ ସ୍ୱର ଝଙ୍କାରରେ ପରିଣତ ହେଇ ବେଶ୍ କିଛି ସମୟ ଶୁଣାଗଲା । ତା'ପରେ ମଞ୍ଚ ଆଲୋକିତ ହେଲା । ମଞ୍ଚ ଶୂନ୍ୟ । ପଛରେ କଳାପରଦା । ସଙ୍ଗୀତ କ୍ଷୀଣ ହୋଇ ହରେଇ ଯାଉଛି । ଭିତରୁ କଥା କହି କହି ଶେଷର ବଡ଼ଭାଇ ଗଣେଶ ଆସିଲା । ଏକ କାରଖାନାର ସେ ଜଣେ ଯୁବକ ମଜ୍‌ଦୁର । ଦେହରେ ମଜଦୁରର ପୋଷାକ । ଏ ସ୍ଥାନଟି ହେଉଛି ଏକ ଖୋଲାସ୍ଥାନ ।)

ଗଣେଶ : (କଥା କହି କହି) ଟିକିଏ ମୁହଁକୁ ଚାହୁଁ ନାହାନ୍ତି ! ··ବୁଢ଼ା ରୋଗୀଟା ଆଉ ଦିନ ଦୁ'ଚାରିଟା ଡାକ୍ତରଖାନାରେ ରହିଥିଲେ କାହାର କି ଲୋକସାନଟା ହେଉ ଯାଉଥିଲା ଯେ ଡାକ୍ତରଖାନାରୁ ତଡ଼ିଦେଲେ ? (ପଛକୁ ଫେରି ଚାହିଁ) ଶୋଷ, କୁଆଡ଼େ ଗଲୁ ?

ଶୋଷ : (ଭିତରୁ) ଯାଉଛି—ଯାଉଛି ।

ଗଣେଶ : (ପକେଟ୍‌ରୁ ସିଗାରେଟ୍ କାଢ଼ି ଟାଣିକି) କ'ଣକା ରୋଗୀପିଲା ପଇସା ଖର୍ଚ୍ଚ ହେଇଯାଉଛି । ହେଲେ ଏବେ ସେ ଗୋଟାଏ ମଜ୍‌ଦୁରର ବାପ, ବାହାର ରୋଗୀ —ଇନ ଡୋର ରୋଗୀ ନୁହେଁ—ସେ'କୋଉ ସରକାରୀ ଡାକ୍ତରଖାନାରେ ରହିବା କଥା । ସ୍ତ୍ରୀ' ବୋଲି···ବଳ ସର୍ଦ୍ଦାରର ଦେଖାତ ପାଇଲି ନାହିଁ—ସିଏ ଥିଲେ ମୋ ପାଇଁ କିଛି ନା କିଛି କରି-ପାରନ୍ତା ।

(ଶୋଷ ଆସିଲା । ସେ ମଧ୍ୟ କାରଖାନାର ମଜଦୁର । ସେ କାରଖାନା ଶାଢ଼ୀ ଅର୍ଥାତ୍ ଗୋଟିଏ ସାଧାରଣ ଏକରଙ୍ଗି ଶାଢ଼ୀ ପିନ୍ଧିଛି । ଶାଢ଼ୀଟି ନୀଳ ବା ସବୁଜ ବର୍ଣ୍ଣ ହେଲେ ଭଲ ।)

ଗଣେଶ : ବାପା !

ଶୋଷ : ବୁଢ଼ା ମଣିଷ—ଏତେଣ ଚେତ ହେଉନାହିଁ । ତ'ପାଇଁ ଚାଲିପାରୁନାହିଁ । ଅଳପଢ଼ ସେ ରାସ୍ତା କଡ଼ରେ ଟିକେ ବସି ଦମ୍ ନେଉଛି ।

ଗଣେଶ : କ'ଣ କରିବା କହିଲୁ ?

ଶୋଷ : ସେମାନେ 'ତ' କହୁଥିଲେ—ବାପା ଡାକ୍ତରଖାନାରେ ରହୁ—ସେମାନେ ଖଟିଆ ଦେବେ । ହେଲେ ଔଷଧ ପଇସା ଖାଇବା ଖରଚ ଆମର । ତୁ ତାହିଁକି ଠିକଣା ମନାକରିଦେଲୁ ?

ଗଣେଶ : ମୋର ଖାଲି ରାଗ ହେଲା ।···ବଳ ସର୍ଦ୍ଦାରକୁ ଖୋଜିଲି ପାଇଲି ନାହିଁ । ସିଏ ଥିଲେ···

ଶୋଷ : ସେ ବଳ ସର୍ଦ୍ଦାର ଚୁଲିକି ଯାଉ । ତୁ ମୋ କଥା ଶୁଣ୍ । ବାପା ଆମ ପାଖରେ ରହିବ । ବୋଝ ତ ନାହିଁ—ଆମେ ତା ପାଇଁ ଔଷଧ ପତ୍ର ଆଣିବା । କିଏ ଜଣେ ତା'ପାଖରେ ରହି ପଞ୍ଚପାଞ୍ଚନ ଯୋଗେଇଦବ—ତା'ଦେହ ମୁଣ୍ଡରେ ଟିକିଏ ହାତ ବୁଲେଇବ ।

ଗଣେଶ : ଆମେ ଦୁହେଁ ତ କାରଖାନାରେ ଖଟିବୁ—ତା'ପାଖରେ ରହିବ କିଏ ? କିଏ ତା'ଦେହ ମୁଣ୍ଡରେ ହାତ ବୁଲେଇବ ?

ଶୋଷ : ସେଇ କଥା ମୁଁ କହୁଚ ସତ, ତୁ ବାହା ହ'। ସ୍ତ୍ରୀଜନ ଆସିଲେ ଘରେ ରହିବ—ବାପାର ସେବା କରିବ ।

ଗଣେଶ : ପେଟରେ ଓଦାକନା ପକେଇ କହନ୍ତ ସେ ତୋର ବାପାର ସେବା କରିବ ? ମୋ ରୋଜଗାର ତ ମତେ ଅଣ୍ଟୁନାହିଁ···

ଶୋଷ : (ଟିକିଏ ତେଜ ହୋଇ) ଅଣ୍ଟିବ କେମିତି ? ଦଶଙ୍କୁ ଦେଖାଇଁ ସିଗା-ରେଟ୍ ଟାଣୁଚୁ ? ତୋ ସାଙ୍ଗର ସବୁ ମଜୁର ତ ବଡ଼ ଟାଣୁଚନ୍ତି—ତୋର କାହିଁକି ଭଳିଆ ସିଗ୍ରେଟ୍ ପିଇବା ଦରକାର ? ସେଇ ପାଞ୍ଚୁନୁଙ୍କ ଖ'ଟଙ୍କା କି ଖରଚଙ୍କା, ସେଇ ମାସକୁ ନ ଦେଲେ ତୋର ଖାଇଆ ହବ ନାହିଁ । ତୋ ମନ ହସଖୁସ ଖେଳିବ କେମିତି ଟଙ୍କତଙ୍କ କନାରେ ସେଣ୍ଟ ଜାମା ପିନ୍ଧୁଚୁ—ପଇସା ଅଣ୍ଟିବ କେମିତି ?

ଗଣେଶ : ତୁ ମତେ ଏ ପାଠ ପଢ଼ାନା, ବୁଝିଲୁ । କେ ପଚାରିବ ମୁଁ କହିବି···

ଶୋଷ : କହିଲ ପରା ମୋ କଥା ପଚାରିବ ଜୁଲୁକ ଯାଉ । ସେ ବୁଝନ୍ତେ ମାଲିକର ଡାହାଣ ହାତ । ତୁ ତା'ର କାଣ ଜ ସିଏ ତୋର ଏ କଥା ସେ କଥା ଶୁଣିବ ? ତା ଝିଅପାକୁ ପଷ୍ଟ ସେ ଚିଟି ପିଟି ମାରି ଦେଇଚ !

ଗଣେଶ : ଥାଉ, ପାଟି କରନା ।··· ବାପା ଗଲେ କୁଆଡ଼େ ?···ବାପା—ବାପା

(ଡାକ ଡାକ ବାହାରକୁ ଚାଲିଗଲ)

ଶୋଷ : ପୁଅ ହେଲ ବାପ ମୁହଁକୁ ଅନେଇନ୍ତି ନାହିଁ !

(ଟିକିଏ ପରେ ଗଣେଶ ବ୍ୟସ୍ତ ହୋଇ ଫେରି ଆସିଲା । ତା' ହାତରେ ଝଣ୍ଡେ ପୁରୁଣା ଗାମୁଛା)

ଗଣେଶ : ଅପେ ଶୋଷ, ବାପା ତ କାହିଁ ସେଠି ନାହାନ୍ତି । ମୁଁ ଏଣେତେଣେ ଖୋଜିପକେଇଲି—କୋଉଠି ନାହିଁ । ତା ଗାମୁଛା ଝଣ୍ଡକ ସେଠି ପଡ଼ିଚ ।

ଶୋଷ : ଭଏ ତୁ ଜଣେ କେଡ଼େ ଦ ବା ! ସଡ଼କ ଉପରେ ସେଇ ପାଖ ଜାଗାଟା ଉପରେ ଅନ୍ଧକା ମାଧ ବସିପଡ଼ିଲ—ମୁଁ ତାକୁ ଟିକେ ଅଟେଇଦେଲି । ତୁ ତାଙ୍କଙ୍କୁ ମତେ କହିବ—ସେଇ ଡାକନ୍ତି, ତୁ ଯା—ମୁଁ ପଛରେ ଯାଉଚ···ମୁଁ ଖୋଜିଆସିଲି ।

ଗଣେଶ : ସେଇ ସାପ ଉପରେ ଉମ୍ପୁଣ୍ଟା ହେଉଥିଲା ...ଶୁଣ୍ଚି ଶୋଭା, ତୁ ଘରକୁ ଯା—ମୁଁ ଯାଇ ପୁଣି ଦେଖେଁ ।

ଶୋଭା : ନାହିଁ ନାହିଁ, ସବୁ ତୁ ଶୁଣ, ମୁଁ ତୋ ସାଙ୍ଗରେ ଯିବି ।

ଗଣେଶ : ନାହିଁରେ ଶୋଭା, ତୁ କାହିଁକି ମୋ ସାଙ୍ଗରେ ଯିବୁ ?...ଅଭ ତ'ଣ କୁଆଡ଼େ ବାଟବଣା ହେବ ..

ଶୋଭା : (କାନ୍ଦ କାନ୍ଦ ହୋଇ) ଭାଇ !

ଗଣେଶ : ମୋ କଥା ମାନେ ଶୋଭା, ତୁ ଯା । ମୁଁ ତ ଏବେଠେଣେ ଦୌଡ଼ା ଦୌଡ଼ି କରି ବାପାକୁ ଖୋଜିବି— ତୁ ଘରାକୁ ଯା । (ପ୍ରସ୍ଥାନ)

ଶୋଭା : ମୁଁ ବୃନ୍ଦାଳୀ କାହିଁକି ଏ ମୂର୍ତ୍ତି ଭଳି—କାହିଁକି ମୋ ବାପାକୁ ଖୋଜି ବୁଲିଆସିବି ?

(ମଞ୍ଚ ଅନ୍ଧକାର ହେଲା । ପରେ ସଙ୍ଗୀତ ବେଶ୍ କିଛିକ୍ଷଣ ଚାଲିବ । ପୁଣି ମଞ୍ଚ ଆଲୋକିତ ହେବାବେଳକୁ ଦେଖାଯାଏ—ମଞ୍ଚ ଉପରେ ଉପସ୍ଥିତ ଗଣେଶ ଓ ଶଙ୍କର ପ୍ରଧାନ । ଅନ୍ତରାଳରେ ଟିକିଏ ଆଡ଼ ହୋଇ ଠିଆ ହୋଇଛି ଶୋଭା । ମୁହଁରେ ବିଷାଦର ଛାୟା । ପୁଅର ଯୋଗ ଦୋକାନ)

(ଶଙ୍କର ପ୍ରଧାନ ହେଉଛି ଦାରୁଖାନା ମାଲିକର ସେଇ ଶ୍ରେଣୀର ଲୋକ, ଯିଏ ମାଲିକର ସ୍ୱାର୍ଥରକ୍ଷା ପାଇଁ ସବୁପ୍ରକାର ଅପକର୍ମ କରିପାରେ । ଦେଖିବାକୁ ଭଦ୍ରଲୋକ—ପରନ୍ତୁ ଧୂର୍ତ୍ତଶିରୋମଣି ହେଲେ ମଧ୍ୟ ବାସିନ୍ଦା । ସେ ସାମାନ୍ୟ ମଦ୍ୟପାନ କରନ୍ତି । ବର୍ତ୍ତମାନ ଗଣେଶର ପରିଧାନ କିଛିଟା ଅଟିଦୃଶ୍ୟ । ସେ ଲୋଟିଏ ଦାରୁ ପାଟି ପିଉଛି । କିନ୍ତୁ ତା'ର କେଶବାସ ପର୍ଯ୍ୟନ୍ତ ବିହ୍ୱଳପାଉଛି । ସେ ମଧ୍ୟ ମଦ୍ୟପାନ କରିଛି, କିନ୍ତୁ ସମ୍ପୂର୍ଣ୍ଣ ମାତାଲ ହେବାପରି ନୁହେଁ । କଥାବାର୍ତ୍ତା ବେଳେ ବେଳେ ଟିକିଏ ଅସଲଗ୍ନ ହୋଇପଡ଼ୁଛି ।)

ବଜ୍ର : ଦେଖ୍ ଗଣେଶ, ଏଠି ଗୁ ଝୁଳୁ—ତୋ ଭ'ଣୀ ଅଛୁ । ମୁଁ ତତେ କହୁଛ ଏ କଥାଟାକୁ ଗୁ ଦେଖି ହୋନା । ଏଭଠି ଦଫାରଫା କରିଦେ ।

(ଗଣେଶ କିଛୁ କହିପାରୁନାହିଁ—ଶୋଷ କିଛୁ ବୁଝିନପାରି ସେଇମିତ ଅଡ଼ହୋଇ ଠିଆହୋଇଛି ।)

ବଜ୍ର : ଜରେ, ତୋ ପାଟିରେ କଥା ନାହିଁକି—ଏଁ ? ମୋ କଥାର ଜବାବ ଦେ ।

ଗଣେଶ : କେକେ···କହୁଚନ୍ତି···

(ଅଉ କିଛୁ କହି ନପାରି ବଜ୍ର ମୁହଁକୁ ଚାହିଁଲା)

ବଜ୍ର : ତୋ ବାପାକୁ କିଏ ସବୁ ମାରିଦେଇଚନ୍ତି—ଏଇଆ ନା ?

(ଏଇଠି ଶୋଷ ବଜ୍ରକୁ ମୁହଁ ଫେରାଇ ଚାହିଁଲା । ତା ମନରେ ହକଣ୍ଠା)

ଗଣେଶ : ହଁ ବଜ୍ର ସର୍ଦ୍ଦାର, ସେଇଆତ କହୁଚନ୍ତି ।

ବଜ୍ର : କୋଉ ଲୋକ କହୁଚି ? ବତା, ବତା କିଏ କହୁଚି । ତୁ ଚାଲ ମୋ ସାଙ୍ଗେରେ—ମୁଁ ଗୋଟି ଗୋଟି କରି ସମସ୍ତଙ୍କ ପାଖକୁ ଯିବ । ଯଦି ଜଣେ କିଏ କହିବ ତୋ ବାପାକୁ କିଏ ମାରିଦେଇଚ ତା'ହେଲେ ମୁଁ ସାଙ୍ଗେ ସାଙ୍ଗେ ଥାନାକୁ ଯାଇ, ଥାନାବାବୁକୁ କହି ଘର ଘର ବୁଲି ସମସ୍ତଙ୍କୁ ଆରେଷ୍ଟ କରେଇବ—ସମସ୍ତଙ୍କ ହାତରେ ହାତକଡ଼ି ପିନ୍ଧେଇବ । (ଗଣେଶର ହାତକୁ ଧରି) ଚାଲ୍, ମୋ ସାଙ୍ଗରେ ଚାଲ୍ ।

ଶୋଷ : ବାପା ତା'ହେଲେ କାହିଁ ?

ବଜ୍ର : (ହସେ ହସେ) ବାପା ତୋର ମରିଚ—ଲାସ୍ ପୋଡ଼ା ହୋଇ ବର୍ଷା ପାଣିରେ ପାଉଁଶ ଧୋଇହୋଇଗଲାଣି ।

(ଶୋଷ ଅଧ ଅନ୍ଧାରରେ କାନ୍ଦି ଉଠିଲା । କାନ୍ଦି ଚାଲିଥାଏ)

ଗଣେଶ : ସର୍ଦ୍ଦାର !

ବଜ୍ର : ରହ, ପିଲାଲୋକ, ତା ମନ ଛୁଟିଯାଏ ସେ କାନ୍ଦୁ ।

(କ୍ରମେ ଶୋଷର କାନ୍ଦ ବନ୍ଦ ହୋଇ ଆସିଲା)

ବଜ୍ର : ଶୁଣ୍ ଶୋଷ, ଗଣେଶ ସାଙ୍ଗରେ ଏସବୁ କଥା ସାନସାହେବଙ୍କ କୋଠିରେ ବୁଝିପାଇଥାନ୍ତା—ମୋ ମନ ମାନିଲାନାହିଁ । ତୁ ତ ପୁଣି ତୋ

ବାପର ଝୁଅ, ଗଣେଶଙ୍କୁ ଆଣି ଏଠିକି ଆସିଲ । ଏଠି ତୋର ସାମନାରେ ସବୁ ଛୁଟିଯିବ ।

ଶୋଷ : ବାପାଙ୍କୁ ମୋର କିଏ ମାରିଲା ? କେମିତି ମାରିଲା ?

ବଜ୍ର : (ଟିକିଏ ରହି) କହୁଛି । ସେଦିନ···ଆଜିକୁ କେତେଦିନ ହେଲା··· (ଭାବି) ହଁ, ବାରଦିନ । ଅମ ଖାନ ସାହେବ—ଜାଣିଛ ଖାନସାହେବ ହେଉଛନ୍ତି ଏ କାରଖାନାର ମାଲିକ—ସେଇ ଖାନସାହେବ କ୍ଲବ୍ ଚଳାଇ ଆସନ୍ତି । କ୍ଲବ୍‌ରେ ମୁଁ ଥାଏ । ମାଲୁମ ଖାନସାହେବ ଟିକେ ମଦ ପିଇ ଦେଇଥିଲେ । କ୍ଲବ୍ ବନ୍ଦ । ବାପା ତୋର ବାରଣ୍ଡାରେ ଲୁଚା ହୋଇ ବସିଥାଏ । ଖାନସାହେବ ଷ୍ଟିଅରିଂ ହ୍ୟାଣ୍ଡଲ ଧରିଲେନାହିଁ । କାରର ମୁଣ୍ଡଟା ତୋ ବାପା ଅଣ୍ଟାରେ ପଟି ହୋଇଗଲା । ଚଲା ମାଡ଼ିନାହିଁ—ମୁଣ୍ଡ ଫାଟିନାହିଁ—ରକ୍ତ ବୋହି ନାହିଁ—ସେଇ ଗୋଟାଏ ଧକ୍କାରେ ତୋ ବାପାର ଜୀବନ ଉଡ଼ିଗଲା ।

ଶୋଷ : (କାନ୍ଦରେ ଫାଟିପଡ଼ି) ନାହିଁ—ନାହିଁ ·ନାହିଁ—ମତେ ଏକଥା ତମେ କହ ନାହିଁ । (କାନ୍ଦୁଥାଏ—କାନ୍ଦ ମଝିରେ ମଝିରେ କହୁଥାଏ) ମୋ ବାପାଙ୍କୁ କେମେ ମାରିଦେଲ···ତା' ଦେହରେ ଗାଡ଼ି ପିଟିହେଇ ଗଲାବେଳେ କି କଷ୍ଟ ତାଙ୍କୁ ହେଇନଥିବ !···ଯାଅ, ମତେ ତେମେ ମାରିଦିଅ । ବାପାଙ୍କୁ ତ ମାରିଲ, ମତେ ଏଇଠି ମୋ ଘେଣ୍ଟି ଚିପି ମାରିଦିଅ··· ବାପା···ବାପା· ·

(ତଳେ ବସିପଡ଼ି ଶୋଷ ଅଠ କୋଳରେ କାନ୍ଦୁଥାଏ । ଏମାନେ ନୀରବ । କିଛିକ୍ଷଣ ବିତିଗଲା । ଶୋଷର କାନ୍ଦ ବନ୍ଦହେଲ ଅସିବ—ସେ ଗଣେଶକୁ ଚାହିଁଲା ।)

ଶୋଷ : ଭାଇ !

ଗଣେଶ : ଉଁ···

ଶୋଷ : ବାପା ମରିଯିବା କଥା ତୁ ଆଗରୁ ଜାଣିଚୁ ?

ବଜ୍ର : ହଁ ସେ ଜାଣିଛି । ମୁଁ ତାଙ୍କୁ କହିଛି ।

ଶୋଷ : ମତେ ଏ ଘାଏଁ ରୁ କେହିନୁ ବାନ୍ଧିଲ ? ବାଧିଲ କହନୁ ?

(ହଠି ଠିଆହୋଇ)

ଗଣେଶ : (ନୀରବ)

ଶୋଷ : ରୁ କ'ଣ ଅନ୍ଧ ମଣିଷ ହୋଇ ରହିନୁ ଭାଇ ? ପାଷାଣ ପାଲଟିଗଲୁଣି ?

ବଜୁ : ଶୁଣ୍ ଶୋଷ…

ଶୋଷ : ତେମେ ଆଗେ ମୋ କଥା ଶୁଣ ।

ବଜୁ : କହ ।

ଶୋଷ : (ଏଥର ବଜକୁ ଆସ୍ପଷ୍ଟରେ ଅଣି) ତେମେ ଅନ୍ଧ ତମ ଯାନବାହାବ ମୋ ବାପାକୁ ମାରଦେଇଚ ।

ବଜୁ : (ଆଶ୍ଚର୍ଯ ହୋଇଯାଇ) ଆମେ…ତୋ ବାପାକୁ ମାରଦେଇଛୁ ! କ ଆଶ୍ଚର୍ଯ କ ଅଦ୍ଭୁତ କଥା ରୁ କହୁଚୁ ! କଏ ତୋତେ ଏକଥା କହିଲା ?

(ଶୋଷ ଏଥରେ ମୂର୍ଚ୍ଛିତା ହୋଇପଡ଼ିବ)

ବଜୁ : କହ କାହାଠୁ ରୁ ଏକଥା ଶୁଣିଲୁ ?

(ଶୋଷ କେବଳ ବଜୋଙ୍କ ଭଳ ଚାହିଁରହିଥାଏ)

ଶୋଷ : (ରହି ରହି) ତେମେ ତ……

ବଜୁ : ଓ ! ଏଇଆ ! ଶୁଣ୍ । ମୁଁ ତତେ ବୁଝେଇଦଉଚ । ରୁ ଏବେ ଜାଣିଲୁ କ ଶୁଣିଲୁ କ ବୁଝିଲୁ ଯେ, ତୋ ବାପାକୁ ଅମେ ମାରଦେଇଚୁ । ରୁ ତ ଅନ୍ଧ ଥାନ ପାଖକୁ ଯିବୁ ।ଁ—ରୁ ନିଜେ ଥାନାକୁ ଯିବୁ…ଯିବୁନା ନାଇଁ ?

ଶୋଷ ' (ରହି ରହି) ହଁ…

ବଜ : ଥାନାକୁ ଯାଇ ରୁ ଥାନାବାବୁଙ୍କୁ କହିବୁ—ହଜୁର, ମୋ ବାପାକୁ ବଜୁ ହଡ଼ାବ ଅନ୍ଧ ଯାନବାବୁ ମାରଦେଇଚନ୍ତି । ଥାନାବାବୁ ଯାଙ୍କେ ପାଞ୍ଚେ ତୋତେ ପଚାରିବେ—ରୁ ଦେଖିଚୁ ସେମାନେ ମାରଦେଇଚନ୍ତି ? ରୁ କହିବୁ—ନା । ହେଇଠୁ ଥାନାବାବୁ ପଚାରିବେ—ରୁ ତ ଦେଖିନୁ—ରୁ କେମିତି ଜାଣିଲୁ ସେମାନେ ମାରଦେଇଚନ୍ତି ? କଏ ତତେ ଏକଥା କହିଲା ? (ଶୋଷ ନୀରବ) ଥାନାବାବୁ ଯେତେବେଳେ ତୋତେ

ପଚ୍ଛରେ ଯେ ତୁ ତ ଜଳ ଆଖିରେ ଦେଖିଲୁ, ତୁ କେମିତି ଜାଣିଲୁ ଯେମାନେ ତୋ ବାପାକୁ ମାରିଦେଲେଣି !···ଏଇଠି ଆକାଶବାଣୀ ତୁ କି ଜବାବ ଦେବୁ—ସେ କଥା ମନେ କର···ହଁ କହ ।

ଶୋକ : (କେମିତି ଗଳା ଭୁଝିନପାରି) ମୁଁ···କହିବ ମନେ ଜଜ୍ ସର୍ଦ୍ଦାର କହନ୍ତି ।

ଜଜ୍ : (ଖୁବ୍ ଜୋରରେ ହସି ହସି) ଜଜ୍ ସର୍ଦ୍ଦାର କହନ୍ତି ଯେ ଜେଜ୍ ସର୍ଦ୍ଦାର ତୋ ବାପାକୁ ମାରିଦେଇଛି ?

(ହସ୍ତିଥାଏ । ଜଜ୍ର ଏ ହସ ଦେଖି ଶୋକ କେମିତି ଏକ ପ୍ରାଣହୀନ ପ୍ରତିମା ପାଲଟି ଯାଏ ।)

ଜଜ୍ : ଅବୋଧ ବାଳକ, ଏଇଟା କ'ଣ ସତ୍ୟଯୁଗ ହୋଇଛି ନା ତୋରେତ୍ରାଯୁଗର ପରଜା ବର୍ତ୍ତି ହୋଇଛି ଯେ ଜଜ୍ ସର୍ଦ୍ଦାର ମଣିଷ ମାରି ହାତରେ କଟା ମୁଣ୍ଡ ଧରି ଆକାଶରେ ହାଜର ହେବ !···ତୋ କଥା ଶୁଣି ଆକାଶବାଣୀ କଣ କହିବ ଜାଣୁ ? କହିବ ଏ ଟୋକାଟା ପାଗଳା ହୋଇଗଲାଣି—ଏଇଟାକୁ ହାଜତରେ ବନ୍ଦ କରିଦିଅ । ଆଉ ହାଜତ କ'ଣ ଜାଣିଛୁ ?

ଶୋକ : ତମର କ'ଣ ଟିକିଏ ବୋଲି ଧରମ କରମ ନାହିଁ ?

ଜଜ୍ : ଏଇଟା କାରବାର ଏରିଆ । ଧରମ କରମ କ'ଣ ତୁ ପଚାରୁଛୁ ତମେ ବସ୍ତିରେ ଦେଖିଥିବୁ । ଦଶହରା ପରବ ହେଲେ ମୂର୍ତ୍ତି ଥାପନ ହୁଏ । ମଦପିଇ ଝିଙ୍କାଝିଙ୍କି ମେଳା ଆରମ୍ଭ ହେବ—ଶେଷରେ ଝଗଡ଼ାରେ ମେଳା ଶେଷ ହେବ—ଏଇ ହେଉଛି ଏଠିକାର ଧର୍ମ ।···ସତ, ତମ ସାଇ ଭଉଣୀ ଦୁହିଁଙ୍କୁ ମୁଁ ମୋ ନିଜର ଝିଅ ବୋଲି ଜାଣେ । ସେଇଥିପାଇଁ ସବୁକଥା ତମକୁ ଖୋଲି କହିଦେଲି । ହେଲେ ମୋ କଥା ଯୁ ଏକାନରେ ଶୁଣିଲ ସେ କାନରେ ବାହାରିକରିଦେ । ତା' ନହେଲେ, ବାପା ତ ମରିଛି ତୁ ସତକୁ ସତ ପାଗଳୀ ହୋଇଯିବୁ । ତୋ ବୁଝିବା ବୁଝିପିଦ ।

ଶୋକ : ଛଇ !

ଗଣେଶ : ଏଁ···

ଶୋଷ : ବାପା ମରଗଲେ—ଅମେ ଶୁଝି ହେଇପାରିଲୁ ନାହିଁ । ତୁ ଏମିତ ବୁଢ଼ ହେଲ ଠିଅହେଇଥିବୁ ?

ଗଣେଶ : (ମାତାଲ ପରି) ମୁଁ ଆଉ କ'ଣ କରିବ ? କ'ଣ କହିବ ? ମୋ ସର୍ଦାରଙ୍କ ସବୁ କଥା କହୁଚ ।

ଶୋଷ : ତୁ…ତୁ ମଦ ପିଇଚୁ ଭାଇ !

ବଳ : ହଁ, ସେ ମଦ ପିଇଚ ।

ଶୋଷ : (ଘୃଣ ଭାବ ଭାବ ହେଇ) କାହିଁକ ପିଇଲୁ ? କିଏ ତତେ ମଦ ପିଇବାକୁ ଦେଲା ? ବାପା ମରିବାର ବାର ଦିନ ତୁ ମଦ ପିଇଲୁ ! ଭାଇ, ମୁଁ ତତେ କ'ଣ କହିବ ଭାଇ, ମୋ ଜଭ ନେଉଟୁ ନାହିଁ…

ବଳ : କାରଖାନାର ମାଲିକ ସର୍ଦାରଙ୍କୁ ହିସପ ଫାଙ୍କି, ଖାଲିଟିମାନଙ୍କୁ ଭେଜାଲ୍ କଳପ ବିକ ରୋଜ ଅଧିକା ପଇସା ପାଏ, ସେଥିରେ ସେ ମଦପିଏ । କାରଖାନାର ମଜଦୁର ଅଠ ଘଣ୍ଟା ଖଟଣିରୁ ଛଅ ଘଣ୍ଟା ଖଟି ଯେଉଁ ଦୁ'ଘଣ୍ଟା ମାଲିକଙ୍କୁ ଠକେ ସେଇ ଠକେଇପଇସାରୁ ସେ ମଦପିଏ । ତୁ ସେଥିରେ ମୁଣ୍ଡ ଖେଳୋଉଚୁ କାହିଁକ ?…ଯାହା ମୁଁ କହୁଚ, ତମ ଦୁ'ଜଣଙ୍କ ସାମ୍ନାରେ ସବୁ କଣ୍ଟିକ୍ ହେଇଯିବ । ଆମ ସାନସାହେବ ଦଶ୍ମାର ଅବତାର । ଏଇ ଦେଖ୍…(ପକେଟ୍ରୁ ଗୁଡ଼ାଏ ନୋଟ୍ ବାହାର କରି) ନେ ଗଣେଶ—ଏ ଟଙ୍କା ରଖ । (ଗଣେଶ ଟଙ୍କା ନେଲା) ଗଣିବୁ ?… ଗଣ । (ହିକଏ ରହି) ତୁ ଗଣିପାରିବୁ ନାହିଁ । ସାନ ସାହେବର ଦଲ ଘର ବୁଝିବ, ତା ହାତ ଖୋଲିଯିବ । ସେଇ ଖୋଲା ହାତରେ ଏ ଟଙ୍କା ସେ ଦେଇଚ । ତୋର ଅଧେ, ଶୋଷର ଅଧେ ।

ଶୋଷ : ଭାଇ, ସେ ଟଙ୍କା ତୁ ରଖନା ।

ବଳ : (ହସ ହସ ମୁହଁରେ ଶୋଷଆଡ଼େ ଚାହିଁ) ବେଶ୍ ! ଟଙ୍କା ନ ରଖିଲେ ତୋ ବାପାକୁ ମାରିଦେଇଚ ବୋଲି ସାନସାହେବ ଜେଲ୍ ଯିବ କ ଫାସିକାଠରେ ଝୁଲିବ ବୋଲି ତୁ ଯଦ ଭାବୁଥାଉ, ତା'ହେଲେ… ଏ ଗଣେଶ, ଟଙ୍କା ଫେରେଇଦେ…(ଜୋର୍ରେ) ଦେ କହୁଚ ।

ଗଣେଶ : ନାଇଁ ନାଇଁ ସର୍ଦ୍ଦାର, ଟଙ୍କା ମୁଁ ଫେରେଇବ ନାହିଁ । ଥିଏ ନନେଲେ ନାଇଁ, ଟଙ୍କା ମୁଁ ନେବ ।

ବଜ୍ରୁ : ଠିକ୍ ଠିକ୍ କହୁ—ଟଙ୍କା ରଖିବୁ ତ ?

ଗଣେଶ : (ଦମ୍ଭରେ) ହଁ ।

ବଜ୍ରୁ : ଆଉ ଦେଖ୍, ମୁଁ ଯାହା ଯାହା ତୋତେ କହୁଚ…

ଗଣେଶ : ତମ କଥାସବୁ ମାନିବ ସର୍ଦ୍ଦାର ।

ବଜ୍ରୁ : ବେଶ୍—ମୁଁ ଯାଉଚ ।

(ନୀରବଦର୍ପରେ ସର୍ଦ୍ଦାର ପ୍ରସ୍ଥାନ । ଭୟ, ଦୁଃଖ ଆଉ ଘୃଣାରେ ଶୋଷ ଝାଉଁଳି ପଡ଼ୁଚ । ଗଣେଶ ଉପରେ ଯେତେ ଦମ୍ଭ ଜଣାପଡ଼ୁଲେ ବି ଭିତରେ ଭିତରେ ଶଙ୍କି ଯାଉଛୁ । ଶୋଷର ମୁହଁକୁ ସେ ଚାହିଁ ବି ଚାହିଁପାରୁନାହିଁ)

ଶୋଷ : ଟଙ୍କା ତୁ ରଖିଲୁ ଭାଇ ?

ଗଣେଶ : ଏତେଗୁଡ଼ାଏ ଟଙ୍କା !

ଶୋଷ : କାରଖାନାରେ ମୁଁ ଚାକିରି କରୁଚ । ହପ୍ତାଦିନ ଟଙ୍କା ତେଇଟା ହାତକୁ ଆସେ—ସେଥିରେ ମନ ମୋର କ୍ଷୁଣ୍ଣେ ମୋଟ ହେଉନଥାଏ । ଆଜି ତୋ ହାତରେ ଏତେ ଟଙ୍କା ଦେଖି ମୋ ମନ ତ ଚହଲୁ ନାହିଁ—ତୋ ମନ କାହିଁକି…

ଗଣେଶ : ସର୍ଦ୍ଦାର କହୁଥିଲା—ଜନ୍ମ ଅଛୁ ଯିଏ ଏମିତ ମଟରେ ଚଲେ ଚାପା ପଡ଼ି ମରିବ, ତା ଘରବାଲାଙ୍କୁ ଟଙ୍କା ମିଳିବ—ସେଇଥିରେ ସବୁ ମାମଲା ତୁଟିଯିବ ।

ଶୋଷ : (କାନ୍ଦ, ବେଶ୍ ଜୋର୍ ଗଳାରେ) ତୁ ଟା'ହେଲେ ନିଜ ହାତରେ ବାପାକୁ ମଟରତଳକୁ ଠେଲିଦେଲୁ ନାଇଁ—ଯିଏ ମାରିବା ଯାଏ କଥା ଶୁଣି ଚାହିଁକି ?…ବଜ୍ରୁ ସର୍ଦ୍ଦାର ତତେ ମଦ ପିଆଇ, ଏ ପୋଷାକ ପିନ୍ଧେଇ ଟଙ୍କା ଦେଇ…

ଗଣେଶ : (ତେଜହଠି) ତୁ ତ ମନାକଲୁ ଟଙ୍କା ନବୁନାହିଁ—ଏ ଟଙ୍କା ମୋର, ତୁ କାହିଁକି ଟଙ୍କା ଟଙ୍କା ହଉଚୁ ?

(ଏ କଥାରେ ଶୋଭାର କାନ୍ଦ ବନ୍ଦ ହେଇଗଲା ସତ—କିନ୍ତୁ ସେ ଏକାବେଳକେ ସ୍ତବ୍ଧ ପଡ଼ିଲା)

ଶୋଭା : (ଅଳ୍ପକରେ) ତୁ ତ ଆଗରୁ ଏମିତି ଗଜେନ୍ଦ୍ରର ସ୍ୱର । ବାପା ମରିଗଲେ ବୋଲି…

ଗଣେଶ : ଶୁଣୁଚୁ ତ ବାପା ବାରଦିନ ହେଲା ମଲେଣି—ହେଲେ ଆଜି ସେଇଥି ହଉଚ କାହିଁକି ?

(ଶୋଭା କିଛିକ୍ଷଣ ସ୍ତବ୍ଧ ହୋଇ ରହିଲା)

ଶୋଭା : ନାହିଁ, ମୁଁ ଆଉ କିଛି କହୁନାହିଁ । ଏ କଥା ମୁଁ ବୁଝିପାରୁ ନାହିଁ । ତୋ' କଥା ବି ସତ । ଯାହା ମୁଁ ଏତେ କହୁଥିଲି ଏଣିକି ଭଲ ମଣିଷ ହୁ', ଭଲ ବୁଦ୍ଧି କର—ଝଗଡ଼ା ଛାଡ଼ ଏ ଦାରୁପାଣି ଛାଡ଼ିଦେ—ଭଲରେ ଭଲରେ ବାହାସାହା ହେଇ…

ଗଣେଶ : ସତ୍ୟ ହବ ଯେ, ହେଲେ ମୁଁ ଆଉ ଏଠି ରହିବି ନାହିଁ ।

(ଶୋଭା ଉପରେ ଯେମିତି ବଜ୍ରପାତ ହେଲା)

ଶୋଭା : (ଛେପ ଢୋକି) ଏଠି ରହିବୁ ନାହିଁ ?

ଗଣେଶ : ନା । ଏ ବସ୍ତିର ଛାଡ଼ି, ଏ କାରଖାନା ଛାଡ଼ି ଜାମସୁର ଚାଲିଯିବି । ସେଠି ଆମ ଗାଁର ଯାହାବର ବଡ଼ଭାଇ ସ୍ୱଜନ୍ ସାହେବ କାରଖାନାରେ ଚାକିରି କରିବି । ବେଶି ଦରମା ମିଳିବ । ଷୋହଳ ଟଙ୍କା, ମାସିକିଆ ଦରମା । ସେଇଠି ରହିବି—ସେଇଠି ବାହାହେବି । କଥା ପକ୍କା ହେଇସାରିଚି । ଆଜି ରାତି ଗାଡ଼ିରେ ମୁଁ ଏଠୁ ଯିବି ।

ଶୋଭା : ତୁ…ହୋସ୍‌ରେ ଆଉ ଏ କଥା କହୁଚୁ ସତ ?

ଗଣେଶ : ହଁ, ପୂରା ହୋସ୍‌ରେ ।

ଶୋଭା : (ମନରେ କିଛି ଭରସା ଆଣି, ମୁଁ…ମୁଁ ତୋ ସଙ୍ଗରେ ଯିବି ତ ?

ଗଣେଶ : ବିଦେଶ ଜାଗା । ସେଠି ଆମ ଜାତ ମାଇପୀ କେହି ନାହାନ୍ତି—ତୁ ସେଠି ଚଳିପାରିବୁ ନାହିଁ । ଜାମସୁର ଏଠୁ ରେଳଗାଡ଼ିରେ ଗୋଟାଏ ଦିନ ଗୋଟାଏ ରାତିର ବାଟ ।

(ଶୋଷ ସମ୍ପୂର୍ଣ୍ଣ ଉତ୍ତେଜିତ ହୋଇପଡ଼ିଲାଣି)

ଶୋଷ : ମୁଁ ତା'ହେଲେ କେମିତି—କୋଉଠି ରହିବ ?

ଗଣେଶ : ଯେମିତି ଗୋଷ୍ଠରେ ଆମେ ରହୁଥିଲୁ । ଆମ ଘରବାଲା କୃଷ୍ଣୀ ମାଉସୀ ପାଖରେ ରହିବୁ ।

ଶୋଷ : ମୋ ମୁହଁକୁ ଚାହିଁ ଏକଥା ତୁ କହିପାରୁଚ୍ କଇ ? ବାପା ମଲାପରେ—ତୁ ସ୍ୱାମିସ୍ତ୍ରୀ—ମୁଁ ଏକାଟିଆ କୃଷ୍ଣୀ ମାଉସୀ ପାଖରେ ରହିବି ! ତୋ ଗୋଡ଼ତଳେ ପଡ଼ୁଚି ଭାଇ, ତୁ ଏ ବୁଦ୍ଧି ଧରନା । ଟିକିଏ ଜାଗା ହେଉ ପଛକେ, ଭାଇ ମୁଁ ତୋ ପାଖରେ ଥିବି । ତତେ ରାନ୍ଧିବାଢ଼ି ଖାଇବାକୁ ଦେବି । ତୋର ପିଲା ସେବା କରିବି । ମୋର ଅଉ କିଏ ଅଛି କହିଲୁ ? ଅଉ ଗୋଟାଏ ଭାଇ ଅଛି କି ଭଉଣୀ ଅଛି—ତା'ପାଖରେ ମୁଣ୍ଡ ଗୁଞ୍ଜି ରହିବି ?

ଗଣେଶ : ତୁ' ତ ତୋର ବାହା ହେଉଛୁ ।

ଶୋଷ : (ଚିକିଏ ରହି) କ'ଣ କହିଲୁ ?

(ଗଣେଶ ଶୋଷ ମୁହଁକୁ ଅନ୍ତ ଚାହିଁ କଥା ବାଣ୍ଡି କହିପାରୁ ନଥାଏ ।)

ଗଣେଶ : ବାପା ବଞ୍ଚିଥିଲା ବେଳେ କହିଥିଲେ ଯେ, ତୋ ବାହାଘର ମନୁଆ ପାଖରେ ହେବ—ସେମାନେ ରାଜି ।

ଶୋଷ : ଭାଇ ହୋଇ ଭଉଣୀକୁ ତୁ ଏକଥା କହିଲୁ ! ମତେ ଏଠି ଏକୁଟିଆ ଛାଡ଼ି ଚାଲିଯିବୁ—ଅଉ କହୁଚୁ ତୁ ତୋର ବାହା ହେଉଛି ! ଏକଥା ତୋ ତୁଣ୍ଡକୁ ଆସିଲା ! ଭାଇ···ଭାଇ···

(ଏହା ପରଠାରୁ ଗଣେଶର ମୁହଁ ତଳକୁ)

ଶୋଷ : ମୋ ମୁହଁକୁ ଥରେ ଚାହିଁଲୁ !

ଗଣେଶ : (ସେମିତି ମୁହଁ ତଳକୁ କରି ଠିଆହୋଇଥାଏ ।)

ଶୋଷ : ସତରେ ତୁ ଅଲଗା ଏଠୁ ଚାଲିଯିବୁ ?

ଗଣେଶ : (ସମ୍ମତିସୂଚକ ଇଙ୍ଗିତ)

ଶୋଷ : ଭାଉଜ ସେ ବଦେଶ ଜାଗାକୁ ଯିବୁ କହିଲୁ ?

ଗଣେଶ : ମୋର ଦେଶ ବିଦେଶ କ'ଣ ? ବାଣ୍ଡ଼ ଗୋଦରେ ତ ଗୋଟେ ଜାଗା ନାହିଁ ।

ଶୋଭା : ଜାଗା ନ ଥାଉ—ମୁଁ ତ ଅଛି । ମୁଁ କ'ଣ ତୋର କେହି ନୁହେଁ ?

ଗଣେଶ : (ନୀରବ)

ଶୋଭା : ଯେତେବେଳେ କୁନ୍ତୀ ମାଉସୀ ପରି ମଣିଷ—ଏକୁଟିଆ ମୁଁ କେମିତି ତା'ପାଖରେ ଚଳିବି କହିଲୁ ?

ଗଣେଶ : (ନୀରବ)

ଶୋଭା : କାରଖାନାକୁ ଯିବା ଆସିବା କରେ—ଯେବେବେଳେ ମନରେ ପଡ଼େ ଥାଏ ଆଖପାଖରେ ମୋ ଭାଇ ଅଛି । ଏଣିକି ତ…

(ଶୋଭା ଆଖିରେ ଲୁହ)

ଶୋଭା : (ଲୁହଭରା ଆଖିରେ) ଭାଇ…ମୋ କଥା ଶୁଣିବୁ ନାହିଁ ?…ମତେ ଆଉ କିଛି କହିବୁ ନାହିଁ…କିଛି ?…ଏ ଯିବା ଆସିବା ବେଳରେ ମୋ ମୁହଁକୁ ଥରେ ଚାହିଁବୁ ନାହିଁ ?…ହଉ ।

(ଧୀର ପଦରେ ଶୋଭା ମଞ୍ଚରୁ ଅପସରିଗଲା । କିଛିଏ ପରେ ଗଣେଶ ଆଗେଇଯାଇ, ଶୋଭା ଯୋଉ ବାଟରେ ଯାଇଛି ସେଇ ବାଟକୁ ଚାହିଁ ଠିଆହେଲା)

ଗଣେଶ : (ହାତ ଟେକି ଡାକିଲା ।) ଶୋ…

(ଅଟକି ଗଲା । ଆଉ ଡାକିଲା ନାହିଁ । କିଛି ସମୟ ଠିଆ ହେଲା । ହୁଏତ ତା ଆଖିରେ ଲୁହ ଆସିଯାଇଛି । ଲୁହ ପୋଛି ତା ପୂର୍ବ ସ୍ଥାନ ଓ ପୂର୍ବ ଅବସ୍ଥାକୁ ଫେରି ଆସିଲା ।)

ଗଣେଶ : ଆଜି ମୁଁ ଏ ପାଞ୍ଚଣୀ ଡିଂ କାରଖାନା ଛାଡ଼ି,ଏ ସହରର ଭିଡ଼ ଛାଡ଼ି ଦୂର ବିଦେଶ ଜାଗା ସୀମପୁର ବୁଲିଯାଉଛି । ବାପା ମରିବା କଥା ଯଦାର ମତେ ଗୋଟି ଗୋଟି କରି ବୁଝେଇଦେଲେ । ମତେ ଟଙ୍କା ଦେଲେ—ନୂଆ ଜାମା ପ୍ୟାଣ୍ଟ ଦେଲେ—ମଦ ପିଆଇ ଦେଲେ—ବଡ଼ ବୁକର କରେଇ ଦେଲେ । ମୋ ପାଇଁ ରେଲ ଟିକେଟ୍ କାଟି ଦେଲେ । ମୋର ଏଥିରେ

ଲୋକପାଖଟା କ'ଣ ହେବ ? ଶୋଭା ତାହିଁକି ଏତେ କାନ୍ଦୁଚି—ଏତେ ବଦଳି ଯାଉଚି ? ସଂସାର ଚାଲୁଚି, ମୁଁ ଏ ଜାଗା ଛାଡ଼ି ନ ଗଲେ ଆଉ ଶୋଭା ପାଖରେ ଏକାଠି ରହିଲେ ଭାରି ଖରାପ ହବ । କାହାର ଖରାପ ହବ ? ମୋର ନା ଶୋଭାର ନା ସଂସାରର ନା ସାନ ସାହାବର ? (ଟିକଏ ଚିନ୍ତାକରି) ନା, ମୋ ମୁଣ୍ଡରେ ଏତେ ବୁଦ୍ଧି ନାହିଁ, ଏତେ ଗୁରୁଏ କଥା ଭାବିବାକୁ । ମୁଁ ସଂସାର ବୁଦ୍ଧିରେ ଚଳିବି । (ଟିକଏ ରହି) ଖାଲି ଏ ଶୋଭା ଟା—ପଛରୁ ତାକୁ ଡାକିବାକୁ ବସିଲି,ଡାକିପାରିଲି ନାହିଁ । ମନେ ଏତେ ଗୁରୁଏ କଥା କହିଗଲା—ମୋ ପାଟିରୁ ପଦେ କଥା ବାହାରିଲା ନାହିଁ । (ତା କଣ୍ଠ ରୁଦ୍ଧ ହେଇଆସୁଥାଏ । ଆଖିରୁ ଲୁହପୋଛି) ନା, ଆଜ ରାତିରେ—ଆଜ ରାତିରେ ମୁଁ ସୀମପୁର ଚାଲିଯିବି । ବାପା କହିଚି ମନୁଆ ପାଖରେ ଶୋଭାର ବାହାଘର ହବ । (ଉଚ୍ଚ ହସିରେ) ମୋର ଜିତି…ମୋର ଜିତି ।

(ମଞ୍ଚ ଅନ୍ଧକାର ହେଲା । ମନ୍ଦ ସଙ୍ଗୀତ । ଅଳ୍ପକ୍ଷଣ ପରେ ଦେଖାଗଲା ମଞ୍ଚ ଉପରେ ଶୋଭା ଆଉ ମନୁଆ । ଏ ଦୃଶ୍ୟ ଆରମ୍ଭରେ ଶୋଭା ଯେଉଁ ଭଲ ଶାଢ଼ୀ ଖଣ୍ଡିକ ପିନ୍ଧି ମଦନ ଘରକୁ ଆସିଥିଲା, ବର୍ତ୍ତମାନ ସେଇ ଶାଢ଼ୀ ପିନ୍ଧିଚି । ମନୁଆ ଏକ ସ୍ୱାସ୍ଥ୍ୟବାନ୍ ଯୁବକ । ଦେହରେ ମଜଦୂର ପୋଷାକ । ମୁହଁର ସେଇ ଖୋଲା ହସ)

ଶୋଭା : କ'ଣ ଆଉ ମୋର ଅଛି ! ବାପା ମରିଗଲା, କାନ୍ଦିଲି—ମୁଣ୍ଡ କୋଡ଼ି ହେଲି । ସିଏ କିଛି ଶୁଣି ନାହିଁ, ସ୍ୱାର୍ଥ ଅଞ୍ଚଳରେ ଉଡେଇ ଦେଇ ତା' ବାଟରେ ଗଲେ । କେତେ କାନ୍ଦିବି—କାହା ମୁହଁକୁ ଚାହିଁ କାନ୍ଦିବି ? …ସେ ଘାଆ ଶୁଖି ନାହିଁ, ତୋ ପାଖରେ ଆସି ଠିଆହେଇଚି ।

ମନୁଆ : ଛି ଶୋଭା, ଥାଉ । ଆଉ ଏ କଥାଗୁଡ଼ା ମନରେ ଆଣେନାହିଁ ।

ଶୋଭା : ଦେଖ୍ ମତେ । ମୁଁ ଖାଲି ହାତ ମାରିଯାଉଁ ମଣିଷଟାଏ । ଯୋଉଠି ଟିକିଏ ଅଗ୍ନି ପାଇଲି ତାକୁ ଆଉଜି ରହୁଥିଲି । ସେ ଅଗ୍ନି ଲିଭିଗଲା, ଆଉ କୋଉଠୁ ଟିକେ ଅଗ୍ନି ପାଇଁ ଖୁଣ୍ଟିଲାପରର ଭଳି ଏଣେତେଣେ ଉଡ଼ ବୁଲିବି ।

ମନୁଆ : (ଶୋଭାର ହାତକୁ ଧରି) ଆଉ ତ ଉଡ଼ ବୁଲିବୁ ନାହିଁ ।

ଶୋଭା : (ମୁହଁ ତଳକୁ କରି) ବାପା କହୁଥାଏ—ମତେ ଶୁଣେଇ ଶୁଣେଇ ମୋହନ ବାପା କୁନ୍ତୀ ମାଉସୀକୁ କହୁଥାଏ—'ମନୁଆ ବାପା ରାଜି ହେଉଛି, ଶୋଭା ତା'ଘରକୁ ବୋହୂ ହେଇ ଯିବ !'

ମନୁଆ : (ଅଭିମାନ କରିପରି) ତୋ ବାପା କହୁଥିଲେ ଯେ, ତୁ ଆମ ଘରକୁ ବୋହୂ ହେଇ ଯିବୁ—ତୁ ଖାଲି ଶୁଣିଲୁ ! ବଡ଼ ଜୋର ମୋର ଦେଖା ହେଲା—ଥରେ ବି ମତେ ମୁହଁ ଟେକି ଚାହିଁ ଟିକେ ହସିନୁ !

ଶୋଭା : (ମନୁଆ ମୁହଁକୁ ଚାହିଁ) ହସିଥିଲେ ଆଉ ଅଧିକ କଣ ହେଇଥାଆନ୍ତା ? ତୋ ଛଡ଼ା ମୋର ଆଉ ଅଛି କିଏ ? ଏଇ ଦେଖ୍, ଏ ଶାଢ଼ୀ ତୁ କିଣି ଦେଇଥିଲୁ—ସେଇ ଶାଢ଼ୀ ଆଜି ମୁଁ ପିନ୍ଧିଛି ।

ମନୁଆ : ବାପା ତ ଆଗରୁ ରାଜି ହେଇଥିଲେ । ତମର ଏ ଘଟଣା ସବୁ ଶୁଣି ବୋଉକୁ କହିଲେ—ନାହିଁ ଆଉ ଡେରି ନୁହେଁ—ଏଇ ମଗୁଶିର ତଥିରେ ବାହାଘର ହେବ ।

ଶୋଭା : (ଧୀରେ ଗଳାରେ) ବାପା ଯଦି ଜାଣି ପାରୁଥା'ନ୍ତା...

ମନୁଆ : ଶୋଭା !

ଶୋଭା : (ଲୁହ ପୋଛି) ନାହିଁ ମୁଁ କାନ୍ଦୁନାହିଁ । ମୁଁ ଜାଣିଛି, ବାପା ମରିଯାଇଛି, ଆଉ ବଞ୍ଚିବନାହିଁ । ମରି ଯାଇଥିବା ଆଉ ଫେରିବ ନାହିଁ । (ହଠାତ୍ ଗଳା ଓ ଭାବ ବଦଳେଇ) ହଁ, ମୁଁ ତୋ ସାଙ୍ଗରେ ବାହିଁକି ଏତେ ବାଟ ଧାଇଁ ଆସିଲି ଜାଣିଚୁ ? ତତେ ଗୋଟାଏ କଥା କହିବି—ଶୁଣିବୁଟି ?

ମନୁଆ : (ଲାଜ ଛଡ଼େଇ) ଟିକିଏ କହ । କଥା ଯେତେ ପାଖ ହେଇ ଆସୁଚି, ତୋ କଥା ଗୁଡ଼ାକ କାନକୁ ମୋର ସେତେ ମିଠା ଲାଗୁଛି ।

ଶୋଭା : କାହିଁକି, କୋଉ ଗୁଣ୍ଡୁ ? କୋଉ ସୁନ୍ଦରଟାଏ ମୁଁ ହେଉଛ !

ମନୁଆ : ସୁନ୍ଦର ମୁହଁ ଦେଖିବାକୁ କେମିତି କ'ଣ ସେଥିରୁ ଦଶ ଟଙ୍କା ଆଣି ମତେ ଦେଇଦେ, ତା'ପରେ ମୁଁ କହିବି ତୁ ସୁନ୍ଦର କି ନୁହଁ... ତୋ କଥା କ'ଣ କହୁ ।

ଶୋଭା : ବାହାଘର ଆଗରୁ ମୁଁ ଚାକରିଟା ଛାଡ଼ିଦେବି ।

ମନୁଆ : (ଟିକିଏ ଆଶ୍ଚର୍ଯ୍ୟ ହେବାପରି) ଚାକିରି...ଛାଡ଼ିଦେବୁ !

ଶୋଭା : (ଡରିଯାଇ) କାହିଁକି ? ମୁଁ ଚାକିରି ଛାଡ଼ିଦେଲେ ତୁ କ'ଣ ମୋତେ ପୋଷି ପାରିବୁ ନାହିଁ !

ମନୁଆ : (ଏକାନ୍ତ ମୁଗ୍ଧ ଦୃଷ୍ଟିରେ ଶୋଭାକୁ ଚାହିଁ) ହୁଁ ... ତୋ କଥା କହୁଥାଉ ।

ଶୋଭା : (ମନୁଆର ହାତକୁ ଧରି) ମୁଁ ତୋ ସ୍ତ୍ରୀ ହେବି ସତ, ହେଲେ ମୋର ସବୁଠୁ ବଡ଼ ଲୋଭ, ତମ ଘରକୁ ବୋହୂ ହେଇ ଯିବାପାଇଁ । ସେଇ ଲୋଭରେ ମୁଁ ମୋ ବାପା ଭାଇ କଥା ସବୁ ପାଶୋରି ଦେଇ ତୋ ପାଖରେ ଆସି ଠିଆ ହେଉଛି ।

ମନୁଆ : (ମୁଗ୍ଧ ଗଳାରେ) ଶୋଭା !

ଶୋଭା : ବାରବର୍ଷ ତଳୁ ଏ କାରଖାନାରେ ଖଟି, ମୁଁ ଏତିକି ବୁଝିଛି, ଯେଉଁଠି ଗୋଟାଏ କାରଖାନା ଅଛି, ଯେଉଁଠି ଆମ ଭଳିଆ ମୂଲିଆ ମଜଦୂର ଅଛନ୍ତି । ଆଉ ଯୋଉଠି ମୂଲିଆ ମଜଦୂର ଅଛନ୍ତି ସେଠି ଗୋଟାଏ ବଡ଼ ସର୍ଦ୍ଦାର ଅଛି । ଦିନ ରାତି ମୋ ଛାତି ଖାଲି ଥରୁଛି । ଆଜି ଜାଣି ତୋ ପାଖରେ ଭଲରେ ଟିକିଏ ଠିଆ ହେଇ ପାରିଲି ।...ବାହାହେଇ—କାରଖାନାରେ ଚାକିରି କରି, ମୁଣ୍ଡରେ ସିନ୍ଦୂର ପାଦରେ ଅଳତା ଲଗେଇ, ମୁଁ ବସ୍ତି ଭିତରେ ଏଘର ସେଘର ବୁଲିବି ସତ—ହେଲେ ତୋ ବାପା ବୋଉଙ୍କ ବୋହୂ ହେଇ ପାରିବି ନାହିଁ ।

(ଶୋଭା ଲୁହ ସମ୍ବରଣ କରିପାରୁନାହିଁ ।)

ମନୁଷ୍ୟ : (ଶୋଷର ପିଠି ଆଉଁସି) ଶୋଷ-ଶୋଷ-ଶୋଷ ! ତୁ ଯାହା କହୁଛୁ ସବୁ ସତ । ଏଣ୍ଟରେ ଖାଇ ତୁ ଖୁସି ହଉ ନାହିଁ—ବାପା ବୋଉ ମୁଁ, ଆମେ ସମସ୍ତେ ଖୁସି ହଉ । ତୁ ଆଜି ଶୁଖିଲା ଦିଶୁଛୁ ।

(ଶୋଷ ପ୍ରକୃତିସ୍ଥ ହେବ)

ଶୋଷ : ବାହାଘର ପରେ ତ ମୁଁ ତମ ଗାଁରେ ତମ ଘରେ ରହିବ ।

ମନୁଷ୍ୟ : ଆଉ ମୁଁ ?

ଶୋଷ : ତୁ ଏଠି ବ୍ୟବସ୍ଥା କରିବୁ—ଏଇଠି ରହିବୁ ।

ମନୁଷ୍ୟ : ତା'ମାନେ ତୁ ରହିବୁ ଗାଁରେ, ମୁଁ ରହିବି ଏଠି ? ଆମ ଗାଁ ପରା ଏଠିକି ନଅ ମାଇଲ ବାଟ । ମଟର ରାସ୍ତା ନାହିଁ ।

ଶୋଷ : ହପ୍ତା ଛୁଟିରେ ଗାଁକୁ ଯିବୁ ।

ମନୁଷ୍ୟ : ଉହୁଁ—ହେଇ ପାରିବ ନାହିଁ । ମୁଁ ରୋଜ ଗାଁକୁ ଯିବି ।

ଶୋଷ : ରୋଜରୋଜ ?

ମନୁଷ୍ୟ : ହଁ...ମୋର ତ ସବୁ ଦିନେ ନଅଟାରୁ ପାଞ୍ଚଟା ଡ଼ିଉଟି ।

ଶୋଷ : ରୋଜ ନଅ ମାଇଲ ଯିବୁ—ନଅ ମାଇଲ ଆସିବୁ ?

ମନୁଷ୍ୟ : ହଁ । ମୋ ଚେହେରା ଦେଖୁଚୁ !

ଶୋଷ : ଥାଉ ମ—ଚେହେରା ଦେଖାନା । ଦୁଷ୍ଟି ଗଣତା ହେଉଛୁ ।

ମନୁଷ୍ୟ : ଯାହା ହେଲେ ବି ତୁ ଘରର ବୋହୂ ହେଇ ଘରେ ରହିବୁ—ଆଉ ମୁଁ ଘରର ପୁଅ ହେଇ ଏଠି ରହିବି ? ହେଇ ପାରିବ ନାହିଁ ।

ଶୋଷ : (ମୁରୁକି ହସି) ଆଉ ଗୋଟିଏ କଥା କହିବି ?

ମନୁଷ୍ୟ : ଗୋଟାଏ କଥା କହୁତ ଅଠର ମାଇଲ ଚାଲିଗଲୁଣି—ଆଉ କ'ଣ କହୁଚୁ କହ !

ଶୋଷ : (ଖୁସି ମନରେ) ଗୋଟିଏ ଭଲକଥା କହିବି ।

ମନୁଷ୍ୟ : ଭଲକଥା କହିବୁ ? (ଉତ୍ସାହରେ) ତା' ହେଲେ ଶିଘ୍ର କହ ।

(ହାଙ୍କେ ଧାଙ୍କେ ବାହାରକୁ ବୁଲିଗଲା)

ଶୋଷ : ଆରେ ଆରେ, କୁଆଡ଼େ ଯାଉଚୁ—ମନୁଷ୍ୟ !"

(ମନୁଆ ପ୍ରାୟ ଘରେ ଘରେ ଫେରିଆସିବ । ହାତରେ ଗୋଟିଏ ଚୋଟ ଲଗା ଫୁଲ । ହଠାତ୍ ଫୁଲ ନୁହେଁ, ଯେକୌଣସି ଅନ୍ୟ ଫୁଲ)

ମନୁଆ : ତୋ ଭଲକଥା ଶୁଣିବା ଆଗରୁ, ଉହୁ—ତୋ ମୁଣ୍ଡରେ ଗୋଟିଏ ଫୁଲ ଖୋସିଦିଏ ।

ଶୋଷ : ହେଉ—ଆମମାନଙ୍କ ଘରେ ମାଇପେ କ'ଣ ମୁଣ୍ଡରେ ଫୁଲ ଖୋସନ୍ତି ?

ମନୁଆ : ଖୋସନ୍ତି ନାହିଁ ?

ଶୋଷ : ନାହିଁ...(ହଠାତ୍) ବୁ ରହିଲୁ ରହିଲୁ—ଏଥର ବାରଖାନା ହାତରେ ଯୋଉ ବୋଟର ହେଉଛେଳ, ସେଥିରୁ ପଦେ ଗୀତ...(ମନେ ମନେ ଭାବି) ହଁ—ପଦେ ଗୀତ ଯୋଉ ମନେଅଛି ।

ମନୁଆ : (ଖୁସିରେ) ମୋ ପଦଟା ଟିକେ ବୋଲିଲୁ ।

ଶୋଷ : ମୁଁ କ'ଣ ବୋଲିବି—ମତେ କଣ ଗୀତ ବୋଲି ଆସେ ?

ମନୁଆ : ଯାହା ଆସେ ବୋଲ୍ ।

ଶୋଷ : ଏଠିଟାରେ କ'ଣ ବୋଲିବି ?

ମନୁଆ : (ଅନୁରୋଧ) ବୋ...ଲ୍ ।

ଶୋଷ : (ଏସିନ୍ନ ଚେଷ୍ଟିତ ଉଚ୍ଚ ସ୍ୱରରେ ଗାଇବ)

ସେ ବନ ବାଳିକା, ଖୋଜାରେ ଭଳିକା
ରୂପ ଖଣ୍ଡି ତା'ର ଅମୂଲ ମୂଲ...

ମନୁଆ : (ଖୁବ୍ ଖୁସିରେ) ବୁ...ବୁ ମୋ ଟାଏ ରେଙ୍କୁଡ ଅଟିସ୍ଟ ହେଇଗଲୁଣି ।

ଶୋଷ : ଶୁଣ୍ ବା, ଗୀତ କହୁଛି—ବନ ବାଳିକା...ବାଳିକା ମାନେ ତ ବାଳିକା...

ମନୁଆ : କ'ଣ ବାଳିକା ମାନେ ବାଳିକା ? ଠକ ଦଉଚୁ ? ବାଳିକା ମାନେ କ'ଣ ଜିତେଇ କହୁ ।

ଶୋଷ : (ଦେହରେ ଜଳକୁ ଦେଖାଇ) ବାଳିକା ମାନେ—ଏଇ ମୁଁ—ବୁଝୁ । ପିଲାଦିନେ ଅକ୍ଷର ଶିଖିବା ପାଏ ପାଠ ପଢ଼ୁଥିବ । ପାଠ ବହିରେ ଲେଖା ହୋଇଛି ବାଳିକା ତା'ପାଖରେ ଗୋଟିଏ ଛୁଆର ଛବି । ଠଉରୁ କ'ଣ ?

ମନୁଆ : ତୁ ଗୋଟାଏ ଟିଚର୍ ହେଇଗଲୁଣି !
ଶୋଭା : ତୁ ମତେ ଚିଡ଼ଉଚୁ, ଏ ବନବାଳିକା ତ ବନଫୁଲ—ନୁହେଁ କି ?
ମନୁଆ : ହଁ, ବନଫୁଲ ।
ଶୋଭା : ଏ ବନଫୁଲ କ'ଣ ? ମେ ଫୁଲ ବାପ ନାଁ ଜଣେ ବନ— ବନମାଳୀ ?
(ମନୁଆ ହୋ ହୋ ହେଇ ହସି ଉଠିଲା)

ଶୋଭା : ଅରେ ! ହସୁଚୁ କାହିଁକି ? କଥାଟାଏ ତ ପଚାରିଲି ।
ମନୁଆ : ଅଳେ ତନ ହେଲା ବଣ—ବଣରେ ଫୁଲ—ଆଦବାସୀ ଫୁଲ ।
ଶୋଭା : ହଁ, ସେଇ ଆଦବାସୀ ଝିଅମାନେ ଖୋସାରେ ଫୁଲ ଖୋସନ୍ତି ।
(ସ୍ୱରରେ) ସେ ବନବାଳିକା, ଖୋସାରେ କଳିକା…
ମନୁଆ : ଏଁ ! କହୁଚୁ ଖୋସାରେ ଫୁଲ ଖୋସନ୍ତି—କଳିକା ପୁଣି କ'ଣ ?
ଶୋଭା : ତୁ କଳିକା ବୁଝିପାରୁନୁ ?
ମନୁଆ : (ପ୍ରକୃତରେ ବୁଝିପାରିନ) କଳିକା—କଳିକା…କଳିକା…
ଶୋଭା : (ମୁହଁରେ ହାତଦେଇ ଖିଲ୍‌ଖିଲ୍ ହେଇ ହସିଲା)
ମନୁଆ : ତୁ କାହିଁକି ହସୁଚୁ ? ମୁଁ ତ ସେମିତ କଥାଟାଏ ପଚାରିଲି…
ଶୋଭା : ସେଇ ପଡ଼ାବନ୍ଧ ଛନ୍ଦ ବନ୍ଧରେ ଲେଖା ହେଇଚ—ବାଳିକା, ବାଳିକା ତଳକୁ କଳିକା—କଳିକା ପାଖରେ ଫୁଲ କଢ଼ିଟିଏ । ବୁଝିଲୁ… ଆମମାନଙ୍କ ଘରେ ମୁଣ୍ଡରେ ଫୁଲ ଖୋସା ହୁଏନାହିଁ ।
ମନୁଆ : (ଶୋଭାର ମଥା ଆଉଁସିଦେଇ) ଆଜ ଏଇ ଅରୁଟିଏ ଖୋସୁଚ ।
ଶୋଭା : (ମନୁଆକୁ ସ୍ନିଗ୍ଧ ଦୃଷ୍ଟିରେ ଚାହିଁ, କୋମଳ କଣ୍ଠରେ) ହଉ, ଖୋସ୍ ।
ମନୁଆ : ତୋର ଗୋଲାପ ନା ଚମ୍ପା—ଏଣ୍ଡେନ୍ତୁ ଫୁଲଟାଏ ତ…

(ମନୁଆ ଶୋଭାର ପଛପଟକୁ ଯାଇ ଫୁଲ ଖୋସିବାର ଉପକ୍ରମ କଲା)
ଶୋଭା : (ସେମିତ ଭାବାବିଷ୍ଟ ହେଇପଡ଼ିଚ) ମୋ ମୁହଁରୁ ହସ ଲୁଆଡ଼େ ହଡ଼େଇ ଯାଇଥିଲା—ପାଟିରୁ କଥା କିଏ କାଢ଼ି ନେଇଥିଲା । ଆଜ ତୋ ପାଖରେ କେତେ ହସିଲିଣି—କେତେ କଥା କହିଲିଣି ।

(ମନୁଆ ଫୁଲ ଖୋସିଦେଇ ସେମିତ ପଛପଟରେ ଠିଆହୋଇ ଶୋଭାର କଥା ଶୁଣୁଥିଲା । ଏଥର ସେ ସାମ୍ନାକୁ ଆସିଲା)

ମନୁଆ : ଶୋଭା ...

ଶୋଭା : ଏଁ !

ମନୁଆ : ଗଛର ଶୁଖିଲା ପତର ବଦଳି ନୂଆ ପତର ହୁଏ । ସେମିତ ମଣିଷର ଭାଗ୍ୟ ବଦଳିଯାଏ...ତୁ ଦେଖିବୁ, ଆମ ଘରେ ଏମିତ ଦୁଃଖୁସିରେ ତୋ ଦିନ କଟିବ ।

ଶୋଭା : ଫୁଲ ଖୋସିଲୁ ?

ମନୁଆ : ଖୋସିଲି ସେ—ମୁଁ ଖୋସିଲି, ମୁଁ ଦେଖିଲି—ତୁ ତ ଦେଖିପାରିଲୁ ନାହିଁ ।

ଶୋଭା : (ମନୁଆର ଛାତି ଉପରେ ମଥାରଖି, ତା ମୁହଁକୁ ଚାହିଁ) ଦେଖୁଚିରେ ମନୁଆ, ତୋ ମୁହଁକୁ ଚାହିଁଲେ ମୁଁ ସବୁ ଦେଖୁଚି ।

ମନୁଆ : ହଉ, ଏଥର ତୋ ଭଲ କଥାଟି କହ ।

ଶୋଭା : ମୁଁ ଚାକରୀ ଛାଡ଼ିଲେ ମତେ କ'ଣ ଟଙ୍କା ମିଳିବ ?

ମନୁଆ : ହଁ, ପି. ଏଫ୍. ।

ଶୋଭା : ବାହାଘରବେଳକୁ ସେଇ ଟଙ୍କାରେ ଗୋଟାଏ ସାଇକେଲ କିଣା ହବ । ପୁରୁଣା ନୁହେଁ—ନୂଆ—ଭଲ ଅସଲ ସାଇକେଲ । (ମୁହଁରେ ତୃପ୍ତ ଭାବ) ସେଇ ସାଇକେଲରେ ତୁ ଗାଁରୁ କାରଖାନା ଯିବୁ ଆଉ କାରଖାନାରୁ ଗାଁକୁ ଆସିବୁ ।

ମନୁଆ : ତୋ ଟଙ୍କାରେ ସାଇକେଲ୍ କିଣାହବ ?

ଶୋଭା : ହଁ ।

ମନୁଆ : ତା ମାନେ ଯଉତୁକ !

ଶୋଭା : ଯଉତୁକ ! ଯଉତୁକ କ'ଣ ? ମୋ କାରଖାନା ଜମା ଟଙ୍କାରେ ମୁଁ ସାଇକେଲ କିଣିଦେବି—ଯଉତୁକ କୋଉବାଟେ ହେଲା ?

(ଏଇଠୁ ଏ ଯଉତୁକ ପ୍ରସଙ୍ଗଟିକୁ ମନୁଆ ମରହାପରେ କହିବାକୁ ଆରମ୍ଭ କଲା ।)

ମନୁଆ : ବାହାହେଲେ ତ, କନ୍ୟାପକ୍ଷରୁ ଯେତେବେଳେ ଆସିବ ସେଇଟା ଯଉତୁକ । ନମସ୍କାର ବାବା—ମୁଁ ସେ ଧନ୍ଦାରେ ପଶିବ ନାହିଁ । ସେ ସାଇକେଲ୍ ଚଢ଼ି ଯେମିତ ମୁଁ ଆମ ଘରକୁ ଯିବି, ଯୁବକ ଆସି ମତେ ଆଉ ସାଇକେଲ ପଛିଆ ନେଇ ଥାନାରେ ଭର୍ତ୍ତି କରିଦେବ ।

(ଶୋଭା ଏ ପରିହାସ ଠିକ୍ ବୁଝିପାରୁ ନଥାଏ)

ଶୋଭା : ନାହିଁରେ ମନୁଆ, ମୁଁ ବୁଝିନି...

ମନୁଆ : ମୁଁ ସବୁ ବୁଝିଛି । ଯୁବକ କହୁଛ ଏଇଟା ପ୍ରମାଣ—ଯଉତୁକ ପ୍ରମାଣ । ଅଙ୍କବାଲା ଏ ଯଉତୁକ ପ୍ରମାଣ ପାଇଁ, କେତେ ସ୍ୱାମୀ ଶାଶୁ ଶଶୁର ଦିଅର ନଣନ୍ଦ ଥାନାକୁ ଯାଉଛନ୍ତି ହାଜତକୁ...ମୁଁ ଯଉତୁକ ଜିନିଷ ଛୁଇଁବି ନାହିଁ ।

ଶୋଭା : ଛୁଇଁବୁ ନାହିଁ ?

ମନୁଆ : ନା ।

ଶୋଭା : (ସବୁ ବୁଝିପାରି) ଦେଖି ଦେଖି ତୋ ମୁହଁ କିଏ ଦେଖି !

ମନୁଆ : (ମୁହଁ ଦେଖାଇ) ଦେଖନ୍ତୁ—ଦେଖ୍ ।

ଶୋଭା : ହୁଁ, ମତେ ଭୁଲେଇ ଦଉଚୁ !...ହଉ ହେଲା । ତୁ ସାଇକେଲ୍ ଯଉତୁକ ନବୁନାହିଁ । ହେଲେ ସାଇକେଲ କଣ୍ଟୋହବ । ବାହାଘରବେଳେ ତୁ'ତ ବେଦୀରେ ବସିବୁ—ତୋ ପାଖରେ ମୁଁ ବେଦୀରେ ବସିବନାହିଁ । ସାଇକେଲଟା ଅଡ଼ୁଆ—ସାଇକେଲ ସାଙ୍ଗରେ ବେତାର ହାତଘଣ୍ଟି ପଡ଼ିବ । ତୁ ସାଇକେଲକୁ ବାହାହେଇ, ମତେ ଯଉତୁକ ନେଇ ତମ ଘରକୁ ଯିବୁ । ଏଥି ଯୁବକ ଧରିବ ନାହିଁ । (ଭଉଁରି ମୋଡ଼ି ହସଇ) ମୋ ହାତ ଜଳୁଛି । (ମନୁଆ ହୋ-ହୋ ହେଇ ହସି ଉଠିଲା) ଛିଃ ! ହସ ବନ୍ଦକରନା !

ମନୁଆ : (ହସି ହସି) ଠିକ୍ କହୁଚୁ । ସାଇକେଲକୁ ବାହାହେଇ ତତେ ଯଉତୁକ ନେବ । ଜିନିଷପତ୍ର ଯିନା ଯଉତୁକ--ବୋହୂଟା କଣ ଯଉତୁକ ! ଯୁବକ ବୁଝି ଗଲା ହେଉଥିବ...ସତେଚେଳେ ଶୋଭା, ତୋ ସାଙ୍ଗରେ ଏମିତ କିଛିଏ ଅଙ୍କ ପରିହାସ ହେଲେ କେତେ ଭଲ ଲାଗୁଚି ।

ଶୋଷ . ଆଚ୍ଛା ।

ମନୁଆ : (ଶୋଷକୁ ଆଦର କରି) ମୁଁ ତ ତୋ ପାଇଁ ଏଯାଏଁ କିଛି କରିନି । ଆଜି ତୁ ମୋ ପାଇଁ…

ଶୋଷ : ଶୁଣ୍—ମୋର ତ ଅନେକ ସ୍ୱପ୍ନ ଅଛି । ମୁଁ ଆଜି ଗୋଟେ ସ୍ୱପ୍ନ ଦାନ କରି ଆଉ ସ୍ୱପ୍ନରେ ସୁକଣ୍ଠ ଛାଡ଼ିଦେବି ।

ମନୁଆ : ବେଶ୍ । ମୋ ଡ଼ିଉଟି ବେଳ ହେଇଗଲାଣି—ମୁଁ ଯାଏଁ ।

ଶୋଷ : ହଁ, ତୁ ଯା ।

(ମନୁଆ ପାଦେ ଯାଇ ଶୋଷ ଆଡ଼କୁ ଫେରି ଚାହିଁଲା—ପୁଣି ପାଦେ ଯାଇ ପୁଣି ଫେରି ଚାହିଁଲା—ଅଧ ପାଦେ ଯାଇ ପୁଣି ଫେରିଚାହିଁଲା ।)

ଶୋଷ : ଉଏ କ ପାଇଁ ନାଗିଚ ?

(ମନୁଆ ଶୋଷପାଖକୁ ଆସିଲା—ଯେମିତି କଣେ ଅପରାଧୀ)

ମନୁଆ : ଦେଖଇଚ, ଏ ଶାଢ଼ୀଟା ତୁ ଆଜି ପିନ୍ଧିଚ । ହେଲେ କହୁଚ, ଶାଢ଼ୀଟା ଉପରେ ମୋର ଭଲକରି ଆଖି ପଡ଼ିନାହିଁ । ଏ ଶାଢ଼ୀଟା ପିନ୍ଧି ତୁ କେମିତି ଦିଶୁଚୁ…

ଶୋଷ : ତୁ ଏତେଠୁ ଯଦି ଏମିତି ଘରମୁହାଁ ହେଲୁନା…

(ମନୁଆ ମୁହଁରେ ଅବୋଧ ହସ)

ଶୋଷ : ଶୁଣ୍—କାରଖାନାରେ ସୁନାର ଜନ୍ମଚ—ହଲେଇ ମନଦେଇ କାମ କରିବୁ—ତୋ ଦରମା ବଢ଼ିବ—ସୁନାର ବଢ଼ିବ । ଆଉ ମୁଁ ନା—ତମ ଗାଁରେ ତମ ଘରକୁ ନାଗି ଯୋଉ ବାଉଁଶବଣ ଅଛି ସେଇଠୁ, ତାକୁ କାଟି ହାତରେ ହାଣି, ପଟାଳିକରି ମାଟି ପୋତି, ପାଣିଦେଇ—କଖାରୁଠୁଁ, ଭେଣ୍ଡିଠୁଁ, ବାଇଗଣଠୁଁ, ବରଗଡ଼ାଠୁଁ, କଞ୍ଚା ଲଙ୍କୁଡ଼ ସବୁ ବାରକାଠ ପଳପଳିବା ଅମଳ କରିବି । ଖାଇବାକୁ ତ ମୋଟେ ଦୁଇଟା ପେଟ—ଅଧେ ପଇସା ହାଟରେ ବିକିବ ହେବ—ମୋ କାରଖାନା ସୁନାର ଦରମା ଯେଉଁଥିରୁ ଉଠିଯିବ ।…ତୁ ଡ଼ିଉଟିକୁ ଯା ।

(ହସି ହସି ମନୁଆ ଚାଲିଗଲେ । ଶୋଭା ମୁଗ୍ଧ ଦୃଷ୍ଟିରେ ଚାହିଁରହିଥାଏ । ତା'ପରେ ଆଖି ବୁଜି ହାତ ଯୋଡ଼ି, ମଥାରେ ଲଗେଇ ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ଆଖି ଖୋଲିଲା ବେଳକୁ ଦେଖିଲା ତା ସାମ୍ନାରେ ଠିଆ ହୋଇଛି ବନ୍ଧୁ ଦର୍ଶାର । ବନ୍ଧୁର ବେଶ ପୋଷାକ ଓ ଚେହେରାରେ କିଛିଟା ପ୍ରେମିକସୁଲଭ ହର୍ଷ ରହିଛି । ବନ୍ଧୁ ଆସିଲା ମାତ୍ରେ ଖୁବ୍ ଉଲ୍ଲାସ ପୂର୍ଣ୍ଣ ଭାବେ କଥାବାର୍ତ୍ତା ଆରମ୍ଭ କରିଦେଲା ।)

ବନ୍ଧୁ : ଶୋଭା, ତୁ ଏଠି ! ମୁଁ ତୋ କୁନ୍ତୀ ମାଉସୀ ପାଖରୁ ଯାଇ ଫେରିଲିଣି । ଗଣେଶୀ ତ ତୋତେ ସବୁକଥା କହିଥିବ । ମୁଁ ସ୍ୱା' ଭିତରେ ଏଠି ନ ଥିଲି —ଯାନପାହେବ ପାଖରେ ବାହାରକୁ ଯାଇଥିଲି—କାଲି ଫେରିଲି । (ଶୋଭା କିଛି ନ କହି କେବଳ ସ୍ଥିରଦୃଷ୍ଟିରେ ଚାହିଁରହିଥାଏ) ତୁ ତା' କେମିତି ଜାଣିବୁ—ମୋ ସ୍ତ୍ରୀ ମରିଯାଇଛି । ତେବେ କେତେଅଡ଼ୁ କେତେ ପ୍ରସ୍ତାବ ଆସୁଛି—ଧନବାନ ଘର—ସୁନ୍ଦରୀ ପାତ୍ରୀ—ସବୁ ନାହିଁ କରିଦେଲି । (ଶୋଭା ନୀରବ) ଗଣେଶୀ କହୁଥିଲା । ତୁ ବାପଛେଉଣ୍ଡ । ଠିକ୍ କଲେ—ନା, ତୁ ଆଉ ଦୁଃଖେକଷ୍ଟ କେତେ ରହିବୁ ନାହିଁ—ମୁଁ ତତେ ବାହାହୋଇ ଘରକୁ ବୋହୂ କରି ନେବି । (ଶୋଭା ଅତର୍କିତ ହୋଇ ହସିଦେଲା) କେତେ ଖୁସିର କଥା କହିଲୁ ? ଏଇ ମାର୍ଗଶିର ମାସରେ ଆମର ବାହାଘର ହେବ । ତୋର ଆଉ କୁନ୍ତୀମାଉସୀ ଘରକୁ ଯିବା ଦରକାର ନାହିଁ । ଏଇଠୁ ତୁ ଏବେ ମୋ ଘରକୁ ଚାଲ । ରାସ୍ତା ଉପରେ ମଟର-ସାଇକେଲ ଥୁଆହୋଇଛି । ତୋର ଭାଗ୍ୟ, ତୁ ମୋ ମଟରସାଇକେଲ ପଛରେ ବସି ଯିବୁ । ମୁଁ ତତେ ତୋ ମନଇଚ୍ଛା ମଟରସାଇକେଲରେ ବସେଇ ବୁଲେଇବି—ଜିପ୍‌ରେ ବସେଇ ବୁଲେଇବି । ଆଁ...କ'ଣ ହେଲା—କ'ଣ କହୁଚୁ ? ମୁଁ ତ ଗଣେଶୀକୁ କହିଛି ତୋ ବାହାଘର ଚିନ୍ତା ମୋର । କ'ଣ ଆଉ କହୁଚୁ ? (ଧକ୍କା ଜୋର୍‌ରେ) ଆଁ...ଆଁ...

(ବନ୍ଧୁ ହାତ ବଢ଼େଇଲାବେଳକୁ ଶୋଭା ପଛକୁ ଘୁଞ୍ଚିଗଲା ! ଖୁବ୍ ଜୋର୍‌ରେ ଡାକିବାକୁ ହେଲେ ଯେମିତି ମୁହଁର ଦୁଇପାଖରେ ଦୁଇ

ପାପୁଲି ଯୋଡ଼ି ଡାକନ୍ତି, ଶୋଷ ଠିକ୍ ସେଇ ଭଙ୍ଗୀରେ ଚିତ୍କାର କରି ଡାକନ୍ତି···)

ଶୋଷ . (ଚିତ୍କାର କରି) ମନୁଆ···ଆ···ଆ···
ବନ୍ଧୁ : ଏଁ···ମନୁଆ ! ତୋର ମନୁଆ ?
ମନୁଆ : (ଦୂରରୁ ବଡ଼ପାଟିରେ) କ'ଣ ହେଲା—କ'ଣ ହେଲା ଶୋଷ ··
(ବନ୍ଧୁ ଲକ୍ଷ୍ୟ କଲା ମନୁଆ ହୁଏତ ତେଣୁ ଆସୁଛି । ସେ ଶୋଷର ହାତ ଧରି ଟାଣିଲା)

ଶୋଷ : ଛାଡ଼ ମତେ ।
(ଶୋଷ ହାତ ଛଡ଼େଇ ନେଲା । ବନ୍ଧୁ ଟିକିଏ ଇତସ୍ତତଃ ହେଇ ମନୁଆ ଆସୁଥିବା ଦିଗର ବିପରୀତ ଦିଗରେ ପଳେଇଗଲା । ପ୍ରାୟ ପରେ ପରେ ଧଇଁସଇଁ ହେଇ ମନୁଆ ଆସିବ ।)
ମନୁଆ : ଶୋଷ !
ଶୋଷ : ମତେ···ମତେ ବାହାହବ ବୋଲି ବନ୍ଧୁ ଭାଇ ଜବରଦସ୍ତି ଟାଣି ନେଉଥିଲା ।
ମନୁଆ : (ଶୋଷ କଥାକୁ କର୍ଣ୍ଣପାତ ନକରି) ଭାଗି ଗଲା ସେ···
(ମନୁଆ ତାଙ୍କ ପଛେ ବାହାରି ଗଲା । ଶୋଷ ଏକାବେଳେକେ ବିଚଳିତ ହେଇ ପଡ଼ିଛି । ମଞ୍ଚରେ ଆଉ ସେ ଚେଷ୍ଟା କରୁଛି ସେ ପାଖରେ କ'ଣ ଘଟୁଛି ଜାଣିବା ପାଇଁ । ଅନ୍ତରାଳରୁ ତୀବ୍ର ଉତ୍କଣ୍ଠାମୂଳକ ଯନ୍ତ୍ର ସଙ୍ଗୀତ କ୍ରମେ ଭାସିଆସିବ ।)

ଶୋଷ : (ବଡ଼ପାଟିରେ) ମନୁଆ—ମନୁଆ, ତୁ ଯାଅ ନାହିଁ—ସେ ତତେ ମାରିଦବ । ମନୁଆ···ମନୁଆ (ଦୂରକୁ ଦେଖୁଥାଏ) ତୁ କୁଆଡ଼େ ଗଲୁ ମନୁଆ ? କାହିଁ, ତୁ'ତ ଆଉ କୋଉଠି ଦିଶୁ ନାହୁଁ···ମନୁଆ···
(ଶୋଷ କାନ୍ଦଉଠିଲା । ଯନ୍ତ୍ର ସଙ୍ଗୀତର ତୀବ୍ରତା ବଢ଼ିବା ସଙ୍ଗେ ସଙ୍ଗେ ଶୋଷ କେତେବେଳେ ମୁହଁରେ ହାତଦେଇ କେତେବେଳେ ହାତ ଉଠାଇ କାଇଁକାଇଁ ହୋଇ କାନ୍ଦୁଥାଏ । କ୍ରମେ ଯନ୍ତ୍ର ସଙ୍ଗୀତ ନୀରବ

ହେଲ । ମଞ୍ଚ ଅନ୍ଧକାର ହେଲ । ସେଇ ଅନ୍ଧକାର ଭିତରେ ଶୋଷର ହୃତ୍ ସ୍ପନ୍ଦନର ସ୍ୱର ଶୁଣାଯାଉଥାଏ ।...ମଞ୍ଚ ଆଲୋକିତ ହେଲ । ଆମେ ଫେରି ଆସିଲୁ ମୂଳଦୃଶ୍ୟକୁ ଅର୍ଥାତ୍ ମଦନର ଘରକୁ । ମଦନ ହାତରେ ନାଟକର ପାଣ୍ଡୁଲିପି । ଶୋଷ ମୁହଁରେ ହାତଦେଇ ଅଡ଼ ବକଳ ହୋଇ ଶୋଇଛନ୍ତି । ଦେହରେ ପୂର୍ବର ସେଇ ଧଳା ଶାଢ଼ୀ—ଯେଉଁ ଶାଢ଼ୀ ମନୁଆ ତାଙ୍କୁ ଦେଇଥିଲ—କିନ୍ତୁ ମଥାରେ ଫୁଲ ନାହିଁ ।...ମଦନ ଧୀର ପଦଚାରଣ କରୁଛି—ଶୋଷ କାନ୍ଦୁଛି । କିଛି ମୁହୂର୍ତ୍ତ ପରେ ମଦନ କଥା କହିବା ଆରମ୍ଭ କଲ । ଶୋଷ ମୁହଁ ଟେକି ମଦନକୁ ଚାହିଁଲ । ବର୍ତ୍ତମାନ ତା'ର କାନ୍ଦଣର ସ୍ୱର କମି ଆସିଛି, କିନ୍ତୁ ଉଚ୍ଛ୍ୱାସ ରହୁଛି ।)

ମଦନ : (ଘର ଭିତରେ ପଦଚାରଣ କରି କରି କହୁଥାଏ) ଏକଥା ଠିକ୍ ଯେ ତମ ବାପା ମରିଯିବା ଘଟଣାକୁ ପୁରାପୁରି ଲୁଚାଇ ଦେବାପାଇଁ ଜମିଦାର ଲୋକଙ୍କୁ ତା ନିଜ ଅଡ଼କୁ ଟାଣି ନେଲ, ଆଉ ତମକୁ ତା ନିଜ ଅନ୍ତଃପୁରରେ ରଖିବା ପାଇଁ ଜାଲ ବିଛେଇ ଥିଲ । ସେ ବୁଝୁଁ ନଥିଲ ତମେ ଭାଇ ଭଉଣୀ ଦୁହେଁ ଏକାଠି ରୁହ ।

ଶୋଷ : ହଁ, ଠିକ୍ ସେଇଆ ।

ମଦନ : ସେଦିନର କଥା—ଜମିଦାର ହାତରେ ଛୁରୀ । ମନୁଆ ହାତରେ କିଛି ନାହିଁ । ଦୁହିଙ୍କ ଧସ୍ତାଧସ୍ତିରେ ଜମିଦାର ହାତର ଛୁରୀ ତା ନିଜ ଗଳାରେ ଲାଗି ହୋଇଗଲ । ସେ ମଲ—କିନ୍ତୁ ମନୁଆର ଦେହସାରା ରକ୍ତ । ପୋଲିସ ତାକୁ ଧରିନେଲ । ତମେ ସେଦିନ ମନୁଆ ପାଖରେ ଥିଲ । ସେଥିପାଇଁ ପୁଲିସ ତମକୁ ମଧ୍ୟ ଧରିନେଇ ହାଜତରେ ଭର୍ତ୍ତିକଲ । ବିଚାର ହେଲ—ବିଚାରରେ ମନୁଆକୁ ହେଲ ଆଜୀବନ ଜେଲଦଣ୍ଡ । ତା ପରେ ତମେ...ତମେ...ହଁ, ତମର ଶେଷ ଆଶ୍ରୟସ୍ଥାନ କୁନ୍ତୀ ମାଉସୀ ଘରେବି ତମର ସ୍ଥାନ ରହିଲନାହିଁ । ତମେ ଦୁଇଦିନ ଦୁଇରାତି ଥାନା ହାଜତରେ ରହିଥିଲ ।...ଅଠର ବର୍ଷର ଝିଅ—ଯା'ର ବାପ ନାହିଁ—ମା'ନାହିଁ—

ବଳ ନାହିଁ—କେହି ନାହିଁ, ଯେ ଦୁଇଟନ ଦୁଇସ୍ତ ଆନା ହାତରେ ରଖି ଅସିଲ ପରେ ତାଙ୍କୁ ଅଭ କଏ କୋଉଁଠି ଅଶ୍ରୟ ଦେବ ? ମନୁଷ୍ୟ ସନ୍ତାନ ପାଇଁ ଜେଲ ଭୋଗିଲି—ଜନେ ସନ୍ତାନ ପାଇଁ ଜେଲରୁ ବାହାରି ଅସିଲ ।

(ଏଭଳି ଶୋଭା ପୁଣି ଭୁଇଁ ପଡ଼ିଲା । ଧୀର ଧୀର ଗୋଟାଏ ଆବେଗରେ ମଦନର ପଛପଟେ ଠିଆହେଲା, ତାର ଦୁଇ ହାତରେ ନିଜର ଦୁଇ ହାତ ପାଖୁଲି ଲଗି, ମଦନର ପିଠିରେ ନିଜର କପାଳ ଲଗାଇ ଦେଲା— )

ଶୋଭା : (ଧୀର ଧୀର) କାହିଁକି, କାହିଁକି ବାବୁ— ସାନସାହେବ କେଉଁ ଦୋଷର ମଟରଧକ୍କାରେ ମୋ ବାପାଙ୍କୁ ମାରିଦେଲେ, ତାଙ୍କର କିଛି ହେଲାନାହିଁ । ମନୁଷ୍ୟତ ଜାଣିଶୁଣି କିଛି କରିନାହିଁ । ଦୋଷର ତା ନିଜ ଭୁଲରେ ମୁକ୍ତି ହେଇ ଗଲା । ମନୁଷ୍ୟ କାହିଁକି ଜେଲକୁ ଗଲା ? (ଟିକିଏ ରହି) ଏଇ ଶାଢ଼ୀ ବାବୁ ମନୁଷ୍ୟ ଦେଇଥିଲା—ସେ ଦିନ ଏଇ ଶାଢ଼ୀ ମୁଁ ପିନ୍ଧିଥିଲି । ତା' କଥା ଶୁଣିବି ବୋଲି ଆଜି ଏଇ ଶାଢ଼ୀ ପିନ୍ଧି ଏଠିକି ଆସିଲି । ସେଦିନ ତା ସାଙ୍ଗରେ କେତେ ହସ ଖୁସି—କେତେ କଥା—କେତେ ଦୁଃଖ ସୁଖ···ହେ ଭଗବାନ !!

(ପୁଣି ଉଚ୍ଛ୍ୱସିତ କ୍ରନ୍ଦନ । ମଦନ କିଛି କ୍ଷଣ ସ୍ଥିର ହୋଇ ରହିଲା ।)

ମଦନ : (ସ୍ଥିର ଗଳାରେ) ଶୋଭା !

(ଶୋଭା ନିଜ ଅବସ୍ଥାକୁ ଫେରିଆସିଲା । ଧୀର ବଦଳରେ ମୁହଁ ଆଖି ପୋଛି ନିଜକୁ ଅଲଗା କରି ନେଲା ।)

ମଦନ : ମୋର ଭୁଲ୍ ଶୋଭା । ଏସବୁ କଥା ଅଦଣା ମୁଁ କେବେହେଁ ଶୁଣିଥିଲି । ଆଜି ସେ କାହାଣୀ ତୁମକୁ ଶୁଣାଇ ତୁମକୁ ମୁଁ କନ୍ଦାଇଲି ।

ଶୋଭା : ନାହିଁ ବାବୁ—ଦୟାବନ୍ତ ପୁରୁଷ ତେମେ । ତମର ଦୟାରୁ ମୋ ନିଜ ଆଖିରେ ସେମିତ ମୁଁ ମନୁଷ୍ୟର ରୂପ ଦେଖିଲି । (ରହି ରହି) ଏ ଫେଟରକୁ ତ କେତେ କେତେ ଲୋକ ଦେଖିବେ !

ମଦନ : ଝାଲ୍ଲ ଦେଖିବେ ନୁହେଁ ଶୋଭା—ଦେଖିବେ, ତମ କଥା ଜାଣିବେ, ବୁଝିବେ—ଗୋଟେ ନିଷ୍ପାପ ପରିବାର ଉପରେ କି ଅତ୍ୟାଚାର ହୋଇଯାଇଛି…

ଶୋଭା : (ମୁଣ୍ଡ ଲଗାଇ ପ୍ରଣାମ କରି) ଠାକୁରେ ତମର ସବୁ ଭଲ ସବୁ ମଙ୍ଗଳ କରନ୍ତୁ । ରାତ ଗଡ଼ିଗଲଣି ବାବୁ—ମୁଁ ଯିବ ।

ମଦନ : ଏତେ ରାତରେ…ଏକା ଯିବ ?

ଶୋଭା : ହଁ ।

ମଦନ : ଚାଲ, ମୁଁ ତମକୁ ଛାଡ଼ି ଦେଇ ଆସିବି ।

ଶୋଭା : ନା ବାବୁ, ତେମେ କାହିଁକି ଯିବ ? ମୁଁ ଚାଲିଯିବି, କିଛି ଡରନାହିଁ । ମନରେ ମୋର ସବୁବେଳେ ଡର । ମୁଁ ତମ ପାଖକୁ ଆସିଥିଲି—ତମ ପାଖରୁ ଯାଉଛି । (ଶୋଭା ଚାଲିଗଲା)

---

# ଦୃଶ୍ୟ—ଚ୍ଚର

[ଏକ ରାଜ ରାସ୍ତା । ମଦନ ପାର୍କରୁ ଫେରି ଶୋଭା ଚାଲିଛି । ବିପରୀତ ଦିଗରୁ ଏକ ପୋଲିସ କନେଷ୍ଟବଲ ଆସିଲା । ସମୟ—ରାତ ପ୍ରାୟ ଦୁଇଟା । କନେଷ୍ଟବଲକୁ ଦେଖି ଶୋଭା ବାଟ ଛାଡ଼ି ଚାଲିଯାଉଥିଲା ।]

କନେଷ୍ଟବଲ : କୌନ୍ ହାଏ ? ଏଇ—କିଏ ?

(ଶୋଭା ମୁହଁ ବୁଲେଇ ଠିଆହେଲା ।)

କନ୍ : ହୁଁ, ଏପାଖକୁ ମୁହଁ ବୁଲେଇ ଠିଆହ—ତୋ ମୁହଁ ମୁଁ ଦେଖେ ।… କିଏ ତୁ ?

ଶୋଭା : ନାଇଁ ବାବୁ…

କନ୍ : ମୁଁ ପଚାରୁଚି "କିଏ ତୁ"—ତୁ କହୁଚୁ—ନାଇଁ ବାବୁ ! ମତେ ବୁଦ୍ଧି ଶିଖାଉଚୁ ? କହୁଚି ପରା ମୁହଁ ବୁଲେଇ ଠିଆ ହ' ।

(ଶୋଭା ଆଦେଶ ପାଳନ କଲା)

କନ୍ : ତୁ !…ମୁଁ ତତେ କୋଉଠି ଦେଖିଚି ନା କଣ ? ତୁ ଭିକ ମାଗିଯାଉଛି ?

ଶୋଭା : ହଁ ବାବୁ, ମୁଁ ଭିକାରୁଣୀଟାଏ ।

କନ୍ : ଭିକାରୁଣୀଟାଏ ତ—ରାତ ଦି'ଟା ବେଳେ ରାସ୍ତାରେ ବୁଲୁଚୁ କାହିଁକି ? …ପୁଣି ଏ ଶାଢ଼ୀ ପିନ୍ଧି ? ଏ ଶାଢ଼ୀ ତୁ ଚୋରି କରିଚୁ ନା: କିଏ ତତେ ଦେଇଚି ?

ଶୋଭା : ନାଇଁ ବାବୁ……

କନ୍ : ପୁଣି ନାଇଁ ବାବୁ ! ଠିକ୍ ଠିକ୍ କହ କୁଆଡ଼େ ଯାଉଥିଲୁ ? ନାଇଁ ତ ଏଠୁ ସିଧା ଥାନାକୁ ନେଇଯିବି । (ଶୋଭାର ଅବସ୍ଥା କାନ୍ଦ କାନ୍ଦ) ଏ ପେଟକା ଛାଡ଼ । ମୁଁ ଢେର୍ ଢେର୍ କାନ୍ଦ ଦେଖିଚି । କହ କୁଆଡ଼େ ଯାଉଥିଲୁ ?

ଶୋଷ : ମୁଁ ଆଉ ଚାଲିପାରିବ ନାହିଁ, ତେବେ ବାବୁଙ୍କ ପାଖକୁ ଚାଲ ।
ଜନ୍ : କେଉଁ ବାବୁ ?
ଶୋଷ : ଶୋଭନ ବାବୁଙ୍କ ପାଖକୁ ମୁଁ ଯାଉଥିଲି...
ଜନ୍ : ଓହୋ, ବାବୁଙ୍କ ପାଖରୁ ଏ ବାହୁଡ଼ା ବନେ ହଉଛ ?
ଶୋଷ : ତମେ ଚାଲ ତାଙ୍କୁ ପଚାରିବ । ସିଏ ମୋ ନେଖାରେ ମଣିଷ ନୁହନ୍ତି —ଠାକୁର, ଦେବତା ।

ଜନ୍ : ସିଏ ଠାକୁର ତା' ଘରେ—ଏ ଘୃଣ ଦ'ଶାରେ ମୁଁ ତା ପାଖକୁ ଯିବି କ'ଣ ଦେଖଉ ହବାକୁ ! ମୁଁ ପଚାରିଲେ ସିଏ ସେମିତ ସତ୍ ସତ ମାନିଯିବେ ?

ଶୋଷ : (ଭୟ ଭୟ) ମାନିବେ ନାହିଁ ?
ଜନ୍ : କେତେ ତୁ ଭଲରେ ପଡ଼ିବୁ ନାହିଁ । ଚାଲ୍ ଥାନାକୁ ।
ଶୋଷ : ମୁଁ କିଛି ଦୋଷ କରିନାହିଁ—କିଛି ପାପ କରିନାହିଁ । ମତେ ଥାନାକୁ ନବ ?
ଜନ୍ : (ଟିକିଏ ଭାବି) ଅଚ୍ଛା, ତୁ ମତେ ଖାଲି କହ—ତୁ କେତେ ଟଙ୍କା ରୋଜଗାର କରି ଅଣିଚ୍ ?
ଶୋଷ : (ଭୟମିଶ୍ରିତ ସ୍ୱରରେ) ଟଙ୍କା ! କି ଟଙ୍କା ? ମୋ ପାଖରେ କିଛି ଟଙ୍କା ନାହିଁ ।

ଜନ୍ : ଟଙ୍କା ଗୋଟିଏ ଲୁଚେଇକରି ରଖିଚ୍ ବାହାରକର । ତୋ ପାଖରୁ ପଚ ଟଙ୍କା ନ ବାହାରିବ, ତେବେ ମୁଁ ଜାଣିବି ତୁ ଠିକ୍ କହୁଚ ।
ଶୋଷ : ମୁଁ ମୋଟେ ମିଛ କହୁନି ବାବୁ ।
ଜନ୍ : ଦେଖି, ଜାମା ଦେଖି...
ଶୋଷ : (ଜାମା ଦେଖେଇ) ଏଇ ଦେଖ ।
ଜନ୍ : ତା'ହେଲେ ଅଲବ ଗୋଟିଏ ଲୁଚେଇ ରଖିଚ୍ ବାହାର କର ।
ଶୋଷ : ମୋ କଥା ମାନ ବାବୁ, ମୋ ପାଖରେ ପଇସାଟାଏ ବି ନାହିଁ । ତମୁକୁ ଲୁଚେଇଦେଇ ମୁଁ କ'ଣ ବଞ୍ଚିପାରିବ ?

ନେ : ତୁ ଆନାକୁ ନଗଲେ ତୋଠୁ ସତେଅଟା ବାହାରିବ ନାହିଁ ଦେଖୁଛି ।

ଶୋଭା : ମୋ କଥା ତା' ହେଲେ ତମେ ପରତେ ଯାଉନ—ମତେ ଅବିଶ୍ୱାସ (ବିଷାଦ) କରୁନ ! ହଉ ! ହେଲେ ବାବୁ ମୁଁ ତମକୁ ଅନୁରୋଧ କରୁଛି । ଏଠି ତେମେ ଅଛ—ମୁଁ ଅଛୁ—ଆଉ କେହି ନାହିଁ । (ଶୋଭାର କଣ୍ଠ ରୁଦ୍ଧ ହୋଇ ଆସୁଥାଏ) ମୁଁ ଏଠି ଆଖି ବୁଜି ଠିଆହେଲି । ମତେ ତମେ ମାର, ପିଟ, ଆନାକୁ ନିଅ—ଯାହାକର ଦେଖିବ ମୁଁ ତୋହଠି ନ୍ୟତେଇ ଷ୍ଟେରେଇ ଟଙ୍କା ରଖି ନାହିଁ—ମୋ ପାଖରେ ପଇସାଟାଏ ବି ନାହିଁ ।

(କଥାର ଶେଷ ଅଡ଼କୁ ଶୋଭାର କଣ୍ଠ ଭାଙ୍ଗି ପଡ଼ୁଥାଏ । ସେ ଆଖି ବୁଜି ଛାତିରେ ହାତ ବାନ୍ଧି ଠିଆହେଲା । ଓଠରୁ ଓଠ ଚପି ହୋଇ ଯାଇଛି । ଆଖି ଲୁହପିଆ । କନେଷ୍ଟବଳ କିଛି ସମୟ ଶୋଭା ଆଡ଼େ ଚାହିଁ ସେ ଭଙ୍ଗି ଦେଖିବେ ଚମକିଲା—ଉଦ୍‌ଭ୍ରାନ୍ତ ହୋଇପଡ଼ିଲା । ତା'ପରେ ସେ ଉପରକୁ ଚାହିଁଲା । ଦୁଇହାତ ଯୋଡ଼ି କପାଳରେ ଲଗାଇଲା । ନିଃଶବ୍ଦରେ ସେ ସ୍ଥାନ ଛାଡ଼ି ଚାଲିଗଲା ।...ଟିକିଏ ପରେ ଶୋଭା ଆଖି ଖୋଲିଲା । ଏଣେ ତେଣେ ଚାହିଁ ଦେଖିଲା କନେଷ୍ଟବଳ ସେଠାରେ ନାହିଁ । ମୁହଁରେ ଏକ ପ୍ରଶାନ୍ତ ଭାବ । ଆଖିରୁ ଲୁହ ପୋଛୁ ଧୀରେ ଧୀରେ ଚାଲିଗଲା ।)

[ ମଧ୍ୟାନ୍ତର ]

---

## ଦୃଶ୍ୟ—ପାଞ୍ଚ

[ଏକ ରଂଗମଞ୍ଚର ବାହାର ପ୍ରାଙ୍ଗଣ । ଏଇମାତ୍ର ଏକ ନାଟକ ଅଭିନୟର ପ୍ରଦର୍ଶନ ଶେଷ ହୋଇଛି । ସେ ପାଖରୁ ମୋଟର ଗାଡ଼ିର ମିଳିତ ଅସ୍ପଷ୍ଟ ଧ୍ୱନି ବେଳେ ବେଳେ ଶୁଣାଯାଉଛି । ସେଇ ଅସ୍ପଷ୍ଟତା ଭିତରେ ଗୋଟିଏ ଯୁବତି କଣ୍ଠ ସ୍ୱର ଅନ୍ତରାଳରୁ ଶୁଣାଯାଉଛି ।]

ନାରୀକଣ୍ଠ : (ଅନ୍ତରାଳ) ଏ ଥିଏଟର ହତା ଭିତରେ ରିକ୍‌ସା ମିଳିବ ନାହିଁ ପରା ?

ପୁରୁଷକଣ୍ଠ : ( ,, ) ନାହିଁ, ଗେଟ୍ ସେପାଖରେ ମେନ୍‌ରୋଡ଼ରେ ମିଳିବ ।

ନାରୀକଣ୍ଠ : ( ,, ) ଠିଆହେଲ କାହିଁକି—ଚାଲ ।

ପୁରୁଷକଣ୍ଠ : ( ,, ) ରୁହ, ଗେଟ୍‌ପାଖରୁ ଟିକିଏ ଗହଳି ଖସୁ ।

ନାରୀକଣ୍ଠ : ( ,, ) ରତ୍ନା କାହିଁ ଗଲା ?

ପୁରୁଷକଣ୍ଠ : ( ,, ) ଏଇ ସେଠି ତା'ର କିଏ ସାଙ୍ଗ ସାଥିରେ କଥାବାର୍ତ୍ତା କରୁଛି ।

ନାରୀକଣ୍ଠ : ( ,, ) ନାଟକ ଯାହାହେଉ, ନାଁଟି ସୁନ୍ଦର ହୋଇଛି—ଶୋଭା !

ପୁରୁଷକଣ୍ଠ : ( ,, ) କାହିଁକି, ନାଟକଟା କିଛି ଖରାପ ହୋଇନି ?

ନାରୀକଣ୍ଠ : ( ,, ) ମୁଁ କହୁଛି ସେକଥା ! ନାଟକ ଖୁବ ଭଲ ହୋଇଛି ।

ପୁରୁଷକଣ୍ଠ : ( ,, ) ଗହଳି ଖସି ଆସିଲାଣି—ଆସ …ଏ ରତ୍ନା—ଆ ।

(ଅନ୍ତରାଳରେ କଥାବାର୍ତ୍ତା ଶେଷ ହୋଇଯାଇଛି । ମଞ୍ଚକୁ ଦୁଇଜଣ ସାମ୍ବାଦିକ ଆସିଲେ)

ବସନ୍ତ : ବୁଝିଲେ ତ୍ରିପାଠୀ ବାବୁ, ବୁଝାପଡ଼େ ଯେ ଗୋଟେ ଖୁବ୍ ଭଲ ନାଟକର ପ୍ରଥମ ଅଭିନୟରେ କିଛି କିଛି ତ୍ରୁଟି ରହିଥାଏ ।

ତ୍ରିପାଠୀ : ଏଇ…ଅଭିନେତାମାନଙ୍କର ଡାଇଲଗ୍ ଠିକ୍ ମୁଖସ୍ଥ ହୋଇନଥାଏ—ପ୍ରମ୍ପ୍‌ଟିଙ୍ଗ ଶୁଣାଯାଉଥାଏ—ଏଇପରି ତ୍ରୁଟି ତ ?

ବସନ୍ତ : ବେଳେ ବେଳେ ନାନାଦି ବିଭ୍ରାଟ ଘଟେ ।

ତ୍ରିପାଠୀ : (ହସି) ଏଇ ତ ଆମ ସାମ୍ବାଦିକମାନଙ୍କର ଦୁର୍ଭାଗ୍ୟ, ଆମେ ଏସବୁ ବକ୍ରାଂଶ ଦେଖିବାପାଇଁ, ସେଇ ପ୍ରଥମ ରାତ୍ରିରେ ହିଁ ଉପସ୍ଥିତ ହୋଇ ଥାଉ ।

ବସନ୍ତ : ଆଜ୍ଞା ସତ୍—ଶୋଷ ନାଟକ ଅଭିନୟରେ ଏସବୁ ଦୋଷତ୍ରୁଟି ପ୍ରାୟ ନାହିଁ । ନିର୍ମଳ ପ୍ରଯୋଜନା ।

ତ୍ରିପାଠୀ : ନାଟ୍ୟକାର କାହିଁ ଗଲେ ?

ବସନ୍ତ : ଏଇ ସେଠି ତିନି ଚାରିଜଣ ନାଟ୍ୟପ୍ରେମୀ ତାଙ୍କୁ ଘେରିଯାଇଛନ୍ତି ।

ତ୍ରିପାଠୀ : ମଦନ ବାବୁଙ୍କ ସହିତ ଆପଣଙ୍କର ଜଣାଶୁଣା…

ବସନ୍ତ : କି କଥା ! ଆମ ପତ୍ରିକାରେ ସେ ପ୍ରାୟ ଲେଖାଲେଖି କରନ୍ତି… ଆପଣଙ୍କ ସହିତ ତ…

ତ୍ରିପାଠୀ : ବନ୍ଧୁ—ବନ୍ଧୁ ଅନେକ ପରିଚୟ । ଗୋଟାଏ କଥା ମୁଁ ବୁଝିପାରୁନି, ମଦନବାବୁ ହଠାତ୍ ନାଟକ ଲେଖାରେ ହାତଦେଲେ କାହିଁକି ?

ବସନ୍ତ : ଯିଏ ଲେଖକ ସେ ସବୁକିଛି ଲେଖିପାରେ । ତା ଛଡ଼ା ନାଟକରେ ପୁରସ୍କାର ସୁବିଧା ଅଛି—ଟଙ୍କା ବି ମିଳିବ ।

ତ୍ରିପାଠୀ : ମଦନ ବାବୁ ଟଙ୍କା ପାଇଁ ଲେଖିବା ଲୋକ ନୁହନ୍ତି ।

ବସନ୍ତ : ଏଇ ଆସିଲେ ।

(ମଦନ ଆସିବ । ପରିଧାନ ସରଳ ସଂପନ୍ନ ପ୍ୟାଣ୍ଟ ସାର୍ଟ । ନାଟକ ସଫଳ ହୋଇଛି, ଏଥିପାଇଁ ଗର୍ବ ବା ଆତ୍ମପ୍ରସାଦର ଚୂର୍ଣ୍ଣ ଅଦୌ ନାହିଁ । କଥାବାର୍ତ୍ତା ଚଳନାଚଳନ ସବୁ ସ୍ୱାଭାବିକ ।)

ମଦନ : (ନମସ୍କାର କରି) ଆରେ…ଆପଣମାନେ ?

ବସନ୍ତ : ଆପଣଙ୍କ ଅପେକ୍ଷାରେ ।

ମଦନ : ଅପେକ୍ଷା……

ତ୍ରିପାଠୀ : ଆପଣ ତ ଲେଖକ । ଅଭିନୟ ଦେଖିଲେ—କିପରି ଆପଣଙ୍କ ମତ କ'ଣ ? ରିଆକ୍ସନ୍ କ'ଣ ?

(ମଦନ ସେମିତ ସ୍ୱର ଅନୁଧାରେ ପଢ଼ୁଥାଏ)

ମଦନ : ମୁଁ…ମୁଁ କିଛି ଜାଣିପାରୁ ନାହିଁ ! (ଏ ଦୁହେଁ ହସିଉଠିଲେ)

ବସନ୍ତ : ବାସ୍ ! ଆପଣ କେବଳ ଦେଖିଲ କିଛି ଜାଣିପାରିବେ ନାହିଁ । ଆମେ ଦର୍ଶକ ପୁଣି ସାମ୍ବାଦିକ—ଆମକୁ ବ ପଚାରିବେ ନାହିଁ ଯେ ନାଟକ କେମିତ ହେଲଚ !

(କ୍ଷଣେ ଏକ ଲଘୁ ପରିବେଶ ସୃଷ୍ଟି ହୋଇଯାଇଚ)

ତ୍ରିପାଠୀ : ହୁସିଆର ମଦନବାବୁ, ବସନ୍ତବାବୁଙ୍କ ହାତରେ ପଡ଼ିବେ ନାହିଁ । କ୍ରିଟିକ୍ ସେ, ମୁହଁରେ କହିଦେବେ—ହଁ, ଠିକ୍ ହେଇଚ—ଶବ୍ଦରେ ତ'ଣ ଯେ ବାହାରିବ···(ସମସ୍ତଙ୍କର ହସ)

ମଦନ : ବସନ୍ତବାବୁ ଜଣେ ଉଚ୍ଚକୋଟୀର ସମାଲୋଚକ । ତାଙ୍କ ଶବ୍ଦରେ ସେ ଯାହା ଲେଖିବେ···

ବସନ୍ତ : ନାହିଁ ଆଜ୍ଞା, ଏ ନାଟକ ଉପରେ ଯାହା ତାହା ଲେଖିହବନାହିଁ । (ଅନ୍ତରଙ୍ଗତାର ସହ) ନାଟକର ନାୟିକା ଶୋଷ—ତା ଜୀବନର ଦୁଇଟି ଧାରର ଚିତ୍ର ଆପଣ ନାଟକରେ ଦେଇଚନ୍ତି । ଗୋଟିଏ ପାଖରେ କେତୋଟି ଆନନ୍ଦମୟ ଅନ୍ତରଙ୍ଗ ମୁହୂର୍ତ୍ତ—ଅନ୍ୟ ପାଖରେ ଦୁଃଖ ଶୋକ ଆଉ ନିର୍ଯାତନା । ଏ ଦୁଇଟି ମଧ୍ୟରେ ଆପଣ ଯେଉଁ ଚମତ୍କାର ସ୍ୱରସାମ୍ୟ ରକ୍ଷା କରି ପାରିଚନ୍ତି—ପୁଣି ଶୋଷର ଜୀବନ ଚିତ୍ର ଆଉ ଆପଣଙ୍କ ନାଟ୍ୟ ପ୍ରତିଭା ଯେପରି···ଯେପରି···ହ୍ୱାଟ୍ ସୁଡ୍ ଆଇ ସେ··· ଯେପରି ଏକୀଭୂତ ହୋଇଯାଇଚନ୍ତି—ଯାହାକୁ କୁହନ୍ତି ସିନୋନିମସ୍ !

ତ୍ରିପାଠୀ : ମୁଁ ତ କହିବି ଏ ନାଟକ ଲୋକପ୍ରିୟ ହେବା ସଙ୍ଗେ ସଙ୍ଗେ ଆମ କ୍ରିଟିକ୍‌ମାନଙ୍କ ପାଇଁ—ମାନେ—ଇଟ୍ ଇଜ୍ ଏ କ୍ରିଟିକ୍ସ ପ୍ଲେ !

ବସନ୍ତ : ଥାଙ୍କସ୍ ମଦନବାବୁ ! ଏ ନାଟକ ଦେଖି ଆମେ ତୃପ୍ତ ମନରେ ଘରକୁ ଫେରୁଚୁ । ଗୁଡ୍ ନାଇଟ୍ ।

(ନମସ୍କାର ଆଦାନ ପ୍ରଦାନ ପରେ ଦୁହେଁ ବିଦାୟ ନେଲେ । ମଦନ ସେଇଠି ଅଛି, ଅସିଲେ ଥିଏଟରର ମ୍ୟାନେଜର । ସେ ଭିତରୁ କଥା କହି କହି ଆସୁଚନ୍ତି ।)

ମ୍ୟାନେଜର : ନାଟକ ଶେଷ ହେଲା, କିନ୍ତୁ ନାଟ୍ୟକାରଙ୍କୁ ଫୁରୁସତ୍ ନାହିଁ—ଇଏ ଆସୁଚ—ସିଏ ଖୋଜୁଚ···

(କଥା କହିବା ଅବସରରେ ମଦନ ହାତରେ କିଛି ଟଙ୍କା ଧରେଇ ନମସ୍କାର କଲେ ।)

ମଦନ : ଏଁ'···ଏଁ' କଣ ମ୍ୟାନେଜରବାବୁ ?

ମ୍ୟାନେଜର : ଆରମ୍ଭ ରଜନୀରେ ଆପଣଙ୍କୁ ଭେଟି ।

ମଦନ : କିନ୍ତୁ···କିନ୍ତୁ ମୁଁ ତ···

ମ୍ୟାନେଜର : ମୁଁ ଜାଣେ ସାର୍, ଆପଣ କେବଳ ଜଣେ ପ୍ରତିଷ୍ଠିତ ଲେଖକ ନୁହନ୍ତି—ଆପଣ ଜଣେ···ମାନେ, ଆପଣ ଚାହାନ୍ତି ସ୍ୱାଧୀନ ଢଙ୍ଗରେ ଚାଲିବାକୁ ! ଭଲ କଥା—ଚାଲନ୍ତୁ । କିନ୍ତୁ ଆପଣ ସମସ୍ତ ଖର୍ଚ୍ଚ କରି, ବୁଦ୍ଧି ଖର୍ଚ୍ଚ କରି କଲମ ଚଳେଇ ଲେଖିଛନ୍ତି—ଆପଣ ଅପଣଙ୍କର ପ୍ରାପ୍ୟ ପାଇବେ ନାହିଁ !

ମଦନ : (କେବଳ ସ୍ଥିର ଦୃଷ୍ଟିରେ ମ୍ୟାନେଜରଙ୍କ ମୁହଁକୁ ଚାହିଁବ)

ମ୍ୟାନେଜର : ଆପଣଙ୍କର ଏ ପ୍ରଥମ ନାଟକ ପରେ ଆମେ ଧରିନେଉଛୁ ଆପଣ ଆମର ଜଣେ ନାଟ୍ୟକାର ହୋଇ ରହିବେ । ଆପଣ ଯେମିତି ଗୋଟିକ ପରେ ଗୋଟିଏ କବିତା ଲେଖୁଛନ୍ତି—ଗପ ଲେଖୁଛନ୍ତି—ସେମିତି ଆପଣ ଗୋଟିକ ପରେ ଗୋଟିଏ ନାଟକ ଆମ ପାଇଁ ଲେଖନ୍ତୁ । ହିଁ, ଆପଣଙ୍କର ବାକି ପ୍ରାପ୍ୟ···

ମଦନ : (କଥାରେ ବାଧା ଦେଇ) ମତେ ଅଶେ କୃତଜ୍ଞତ, ଆପଣ କଣ ଠିକ୍ ଜାଣିପାରୁଛନ୍ତି ଏ ନାଟକ ଚାଲିବ ! ବହୁ ସଂଖ୍ୟାରେ ଲୋକ ଆସି ଦେଖିବେ ?

ମ୍ୟାନେଜର : (ସ୍ମିତବଦନ) ଏତେ ଦିନ ମ୍ୟାନେଜରି କଲିଣି, ଏତେ ଏତେ ବହି ପ୍ରତ୍ୟକ୍ଷ କଲିଣି—ଏତିକି ଜାଣିପାରିବିନାହିଁ ! କାଲି ସକାଳ ନଅଟାବେଳେ ତ ଟିକେଟ ବିକ୍ରି ପାଇଁ କାଉଣ୍ଟର ଖୋଲା ହେବ, ଆପଣ ନିଜେ ଆସି ଦେଖନ୍ତୁ !···ଗଦା ଗଦା ଧାଡ଼ି ଲାଗିବ ।···ହଁ, ଆପଣଙ୍କ ନୂଆ ଘର ମନକୁ ଠିକ୍ ପାଉଛି ତ ?···ନାଟକ ରିହରସାଲ୍ ଚାଲିଥାଏ, ସେଦିନ ଆପଣଙ୍କର ସେ ପୁରୁଣା ଚାଳଘରକୁ ଯାଇ ଦେଖିଲି ସେ ଘର ପାଖ ଚାଳ କଣା ହୋଇ ବର୍ଷା ହେଉଛି—ଆପଣ ଜାକିଜୁକି ହୋଇ ଗୋଟିଏ କଡ଼ରେ ବସିଛନ୍ତି । ମନେ ମନେ ଭାବିଲି—ନା, ଆମ ମଦନବାବୁ ଆଉ ଏ ଘରେ ରହିବେ ନାହିଁ । ସାଙ୍ଗେ ସାଙ୍ଗେ ଆସି ଏ ଘରଟାକୁ ଆପଣଙ୍କ ପାଇଁ ଯୋଗାଡ଼ କଲି ।

ମଦନ : ଘରତ ଭଲ—କିନ୍ତୁ ଭଡ଼ା କେତେ ?

ମ୍ୟାନେଜର—ଆପଣ ବୁଝନ୍ତୁ । ଘରମାଲିକ ସ୍ୱୟଂ ନାଟ୍ୟପ୍ରେମୀ ଲୋକ । ଉଚିତ ଭଡ଼ାହିଁ ସେ ନେବ ।...ହିଁ, ଅନନ୍ତବାବୁ ଆଜି ତାଙ୍କ ଦାଦା ସେ ଦେଖିବାକୁ ଆସିଥିଲେ—ବୁଲିଗଲେଣି ?

ମଦନ : ନା, ଜଷ୍ଟିସ ଦାସଙ୍କ ସହିତ ଏଇ ସେଠି କଥାବାର୍ତ୍ତା ହେଉଛନ୍ତି ।

ମ୍ୟାନେଜର : (ହାତଯୋଡ଼ି) ମୁଁ ଆପଣଙ୍କୁ ଯାହା କହୁଛି—ଆପଣ ବୁଝିଯିବେ ନାହିଁ—ଏଇଠି ଖାଇକରି ଯିବେ ।

ମଦନ : ନା-ନା...

ମ୍ୟାନେଜର : କ୍ଷମା କରିବେ ସାର୍—ନାଟକ ଆରମ୍ଭ ଦିନ ନାଟ୍ୟକାରଙ୍କୁ ଆମେ ଚର୍ଚ୍ଚା କରିବୁ ହିଁ କରିବୁ । ଏଇଟା ଆମର ଗୋଟାଏ ଧର୍ମ । ଅନନ୍ତବାବୁଙ୍କ ପାଖରେ କଥାବାର୍ତ୍ତା ସାରି ଆପଣ ଆଜି ଅଫିସଘରକୁ ଆସନ୍ତୁ ।...ମୋ ମନ ଯେ ଆଜି କେତେ ଖୁସି...

(ଗୁନ୍ଗୁନ୍ ଗୀତ ଗାଇ ମ୍ୟାନେଜର୍ ବୁଲିଗଲେ । ଟିକିଏ ପରେ ଅନନ୍ତ, ଉପେନ୍ଦ୍ର ଓ ମାଧବୀ ଆସିଲେ ।)

ଉପେନ୍ଦ୍ର : ମଦନବାବୁ, ଜଷ୍ଟିସ ଦାସଙ୍କ ସହିତ ଏଇ ନାଟକ ବିଷୟରେହିଁ କଥାବାର୍ତ୍ତା ହେଉଥିଲା । ଆମ ନାଟକର ଭବିଷ୍ୟତ ସମ୍ପର୍କରେ ସେ ଖୁବ୍ ଚିନ୍ତା କରୁଛନ୍ତି ଦେଖିଲି । ସୁଖର କଥା, ତମର ଏ ନାଟକ ଦେଖି ଜଣେ ନାଟ୍ୟକାର ଭାବେ ତମ ଉପରେ ତାଙ୍କର ଖୁବ୍ ଆସ୍ଥା ରହିଛି ବୋଲି ସେ କହିଲେ । ତମ ସହିତ ତାଙ୍କର ତ କଥାବାର୍ତ୍ତା ହେଉଥିଲା ?

ମଦନ : ଆଜ୍ଞା ।

ଅନନ୍ତ : ମାଧବୀ, ତୁ ତ ସବୁ କଥାରେ ଫିଲସଫ୍ । ବେଶ୍ ମନଧ୍ୟାନ ଦେଇ ନାଟକ ଦେଖୁଥିଲୁ । କିଛି କହୁନୁ ଯେ ?

(ମାଧବୀର ମୁହଁ ସବୁଦିନ ପରି ସେତେବେଳେ ବି ପ୍ରଶାନ୍ତ ।)

ମାଧବୀ : ଆପଣଙ୍କ ଉତ୍କୃଷ୍ଟ କବିତା 'ଶୋକ'—ବମ୍ବେର ଇଂଲିଶ୍ ପତ୍ରିକା "ଟୁ'ଡେ ଆଣ୍ଡ ଟୁମରୋ" ରେ ଆପଣଙ୍କ ଇଂରେଜୀ ଗଳ୍ପ "ଏ ଫଲନ୍ ଲିଫ୍" ଆଉ ଆଜିର ଏ ନାଟକ—ଏହାକୁ କ'ଣ "ମଦନ ରାଏ ଷ୍ଟୋରୀ" ବା ଟ୍ରାଜେଡି କୁହାଯାଇପାରିବ ?

(କିଛି ମୁହୂର୍ତ୍ତ ନୀରବତା)

ମଦନ : ଏ ଚିନ୍ତା ମୁଁ କରିନାହିଁ ।

ମାଧବୀ : ଅନନ୍ତଭାଇ କ'ଣ କହୁଛ ?

ଅନନ୍ତ : ରୂ ଅବ ପତ୍ୟାକର ରାୟଙ୍କ ଟ୍ରାଜେଡି କଥା···

ମାଧବୀ : ନା, ତାର ରୂପ ଭିନ୍ନ । କିନ୍ତୁ ଗୋଟିଏ ଫିଲ୍ମର ତିନୋଟି ଅଧମ ବାହୁ ପର ଶ୍ରୀଯୁକ୍ତ ରାୟଙ୍କ କବିତା, ଗଳ୍ପ ଓ ନାଟକକୁ ତାଙ୍କର ଟ୍ରାଜେଡି କୁହାଯିବା ଉଚିତ ବୋଲି ମୁଁ କହିବି । କାରଣ ବିଷୟବସ୍ତୁ ଏକ ହେଲେ ହେଁ ଟ୍ରିଟମେଣ୍ଟ ଭିନ୍ନ ।

ଅନନ୍ତ : (ଟିକିଏ ରହି) ଅଚ୍ଛା, ଏ ନାଟକ କଥା କହ ।

ମାଧବୀ : (କିଛି କ୍ଷଣ ଓଠରେ ଦାନ୍ତ ଚିପି) ଯେଉଁ ଗଳ୍ପ, ଥିମ୍ ବା ବିଷୟବସ୍ତୁକୁ ନେଇ ଶୋକ ନାଟକ ଲେଖାହୋଇଛି, ସେଭଳି ଗଳ୍ପ ଖବରକାଗଜର ରିପୋର୍ଟିଙ୍ଗ୍ ପାଇଁ ଆଉ ରାଜନୀତିର ସ୍ଲୋଗାନ ପାଇଁ ଖୁବ୍ ସେନ୍‌ସେସ୍‌ନାଲ୍—ଖୁବ୍ ଉତ୍ତେଜନାପୂର୍ଣ୍ଣ । ଏମିତି ଏକ ସେନ୍‌ସେଟିଭ୍ ଗଳ୍ପକୁ ନେଇ ନାଟକ ଲେଖିବା···ସ୍ଲେପ୍, ଇଟ୍ ଇଜ୍ ଚ୍ୟାଲେଞ୍ଜିଙ୍ଗ୍ !

ଅନନ୍ତ : ଚ୍ୟାଲେଞ୍ଜିଙ୍ଗ୍ ତ—କିନ୍ତୁ ମଦନ କେତେଦୂର ସେ ଚ୍ୟାଲେଞ୍ଜର ସମ୍ମୁଖୀନ ହୋଇପାରିଛି···

ମାଧବୀ : ସବୁ ଉତ୍ତେଜନା—ସବୁ ସ୍ଲୋଗାନକୁ ସମ୍ମାନ ଦେଇ ମଦନବାବୁ ଲେଖିଛନ୍ତି ଶୋକ ନାଟକ, ଯାହା ହୋଇଛି ପ୍ରଥମେ ଏକ ହୃଦୟସ୍ପର୍ଶୀ ସୁନ୍ଦର ନାଟକ—ପରେ ଅନ୍ୟ କିଛି । କିଛି ସହଜ କଥା ନୁହେଁ ।

ମଦନ : (ମାଧବୀ ଉପରେ ଏକ ଚଞ୍ଚଳ ଦୃଷ୍ଟିପାତ କରି, ପୁଣି ତଳକୁ ମୁହଁ କରି) ଥାଙ୍କସ୍ ।

ମାଧବୀ : ନାଟକ ଦେଖି ସାରିବାପରେ ମନ ହୁଏ ତ ଏକ ଅଭାଗିନୀ ଝିଅ ଶୋଭାକୁ ଥରେ ଆଖି ଆଗରେ ଦେଖିବାକୁ—ଏବେ ଜାଣନ୍ତି କେମିତି ତା ଚରିତ୍ରଟି...ଓ୍ୱାନ୍ ଓ୍ୱାଣ୍ଡର୍ସ ଇଫ୍ ଶୋଭା ଇଜ୍ ଏ ମ୍ୟାଟର ଅଫ୍ ଫ୍ୟାକ୍ଟ ଅର୍ ଫିକ୍‌ସନ (One wonders if Sova is a matter of fact or fiction)

ଅନନ୍ତ : ପରରେ ମଦନ, ଶୋଭା ଚରିତ୍ରକୁ ଏକ କଳ୍ପନା ବୋଲି ସହଜରେ କହିହେବନାହିଁ ।

ମାଧବୀ : ଅନୁଭବ, ଯିବା ?

ଅନନ୍ତ : ହଁ...(ମଦନକୁ) ତୋର ବୋଧେ ଯିବାକୁ ଡେରି ଅଛି ?

ମଦନ : ବୋଧହୁଏ ।

ଅନନ୍ତ : (ଉଭୟ ହସି) ଆମେ ତା'ହେଲେ ଯାଉଛୁ ।

(ନମସ୍କାର ଆଦାନ ପ୍ରଦାନ ପରେ ଏମାନେ ବିଦାୟନେଲେ । ସଙ୍ଗେ ସଙ୍ଗେ ଅନନ୍ତ ପୁଣି ଫେରି ଆସିଲା ।)

ମଦନ : କ'ଣ ହେଲା ?

ଅନନ୍ତ : ଜାଣିଛୁ, ଏ ବହି ଛପା ହେବ ।

ମଦନ : ଆଶ୍ଚର୍ଯ୍ୟ କଥା ! ଆଜି ନାଟକର ଆରମ୍ଭ—ଅଥଚ ଜଣେ ପ୍ରକାଶକ ଏଠିକି ଆସି......

ଅନନ୍ତ : ନା, ତୁ ତାଙ୍କୁ କିଛି କଥା ଦେ'ନା । ବହି ପ୍ରକାଶନ କଥା ମୁଁ ବୁଝିବି । ଭଲ ଛପା—ସୁନ୍ଦର ରୟାଲଟି—

ମଦନ : ହଁ ଭାଇ, ସେ ଦାୟିତ୍ୱ ତୋର । ମୁଁ କିଛି ବୁଝିପାରୁନି ଅନନ୍ତ—ଏଏ ଯେମିତି ଗୋଟେ ଗୋଲକଧନ୍ଦା ।

ଅନନ୍ତ : (ହସି) ଆଉ ତୁ କ'ଣ ଭାବିଥିଲୁ ତମ ଦଳଟା ସବୁବେଳେ ଅନ୍ୟମାନଙ୍କୁ ଗୋଲକଧନ୍ଦାରେ ପକେଇବ, କେବେ ସେ ଧନ୍ଦାରେ ପଶିବ ନାହିଁ !...ଯାଉଛି ।

(ଅନନ୍ତ ପ୍ରସ୍ଥାନ । ସାଙ୍ଗେ ସାଙ୍ଗେ ମ୍ୟାନେଜର୍ ପଶିଲେ)

ମ୍ୟାନେଜର : ଆସନ୍ତୁ ଆଜ୍ଞା, ଆସନ୍ତୁ । (ଅନ୍ତରାଳରେ ତାହାଙ୍କୁ ଲକ୍ଷ୍ୟକରି) ହେ ଶାମ, ଅଫିସ୍ ଘର ସେପାଖଟା ଝାଡ଼ୁ, ଟେବୁଲ ଚେୟାର ସଫେଇ ଦେଲୁ ?

ଶାମ : (ଅନ୍ତରାଳରୁ) ଆଜ୍ଞା ।

ମ୍ୟାନେଜର : ପୂଜାଙ୍କୁ କହିଦେ, ମଦନ ବାବୁ ଅଫିସ ଘରେ ଖାଇବେ... ଆଉ ଶୁଣ୍ (ଇଙ୍ଗିତ ନମ୍ରସ୍ୱରରେ) କହିଦେ ମୋଟାଏ ବଡ଼ ପ୍ଲେଟ୍‌ରେ... ଆଣ୍ଟୁ ଥାଉ, ମୁଁ ସେଇଆ ବୁଝିବି, ତୁ ଯା...(ମଦନଙ୍କୁ) ଆସନ୍ତୁ ସାର୍ ।

(ମଦନ ଓ ମେନେଜର ଚାଲିଗଲେ । କିଛିଏ ପରେ ଧୀରଛନ୍ଦ ପଦରେ ଆସିଲେ ଶୋଷ ଓ କୁମୀ । ସେଇ ଭିକାରୁଣୀ ରୂପ ; ସେମାନେ ଆସି ଏଣେତେଣେ ଖୋଜିଲା ଆଖିରେ ଚାହିଁଲେ ।)

କୁମୀ : (ସେତେ ସମ୍ଭବ ଧୀର ଗଳାରେ) ଚାଲ, ଏଠି ତ କୋଉଠି ନାହାନ୍ତି ।

ଶୋଷ : ରାସ୍ତା ଉପରୁ ମୁଁ ଦେଖିଚି, ଏଠି ପଞ୍ଚାଏ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା ହଉଥିଲେ ।

କୁମୀ : ଆଉ ଗଲେ କୁଆଡ଼େ ?

ଶୋଷ : କେଜାଣି !

(ମ୍ୟାନେଜର ଖୁସି ମନରେ ଗୁଣୁ ଗୁଣୁ ଗୀତ ଗାଇ ପୁଣି ଆସିଲେ ।)

ମ୍ୟାନେଜର : କିଏ ସେଠି ? (ପାଖକୁ ଆସି) ଆରେ ତେମେ ଦୁ'ଟା ଏଠି କ'ଣ କରୁଚ ? ଷ୍ଟେଟର ଗାର୍ଡ ନା—ଗିଏ ଯାହାର ଚାଲିଗଲେଣି । ଆଉ କିଏ ଲୁଚି ଲୁଚି ବୋଲି ଏଠି କଣ ଠିଆହେଇଚ ? ଯାଅ—ଯାଅ ଏଠୁ । (କହେ ଦୁ'ପାଦ ଆଗେଇ ଯାଇ ପୁଣି ଫେରି) ହଉ ନେ—ନେ, ଆଜିତ ଭଲ ହେଇଚି—ମୋ ମନ ବଡ଼ ଖୁସି—ନେ, ପୁରା ଟଙ୍କାଏ । (ଟଙ୍କା ବାହାର କରି ବଢ଼େଇଲେ । ଶୋଷର ଅତ୍ୟନ୍ତ ରାଗ । କୁମୀ ଟଙ୍କାଟି ନେଲା) ହଁ, ଶୁଣ୍, ଭଲରେ କହିଦେଉଚି—ଷ୍ଟେଟର ଚାରିପାଖରେ ଆଉ ଏ ହତା ଭିତରେ ପଶିବ ନାହିଁ । ଏଇଟା ଭଦ୍ର ଲୋକଙ୍କ ଜାଗା ହେଇଚି । (ଜୋର୍ ଗଳାରେ) ଯାଅ !

(କୁମ୍ଭୀ ହସ୍ତରେ ବ୍ୟସ୍ତ । ଶୋକ ଠିଆହୋଇଯାଏ ।)

ମ୍ୟାନେଜର : କଣରେ ତୁ ଘରକୁ ଯାଉନୁ ? କ'ଣ ହେଉଛ ? ତୁ ଭୟ ମାରି ଯାଇଥିଲୁଟି ? ତୋ ପାଖିରେ ଟ'ଙ୍କ ଭଣା ନାହିଁ ? କଏ ତୁ ?

ଶୋକ : ବାବୁ ମୁଁ…

ମ୍ୟାନେଜର : ତୁ କଏ ?

ଶୋକ : ମୁଁ ··ମୁଁ ଶୋକ ।

ମ୍ୟାନେଜର : ଶୋକ ! (ହସିଉଠି) ଶୋକ ! ମୋର ଅଫିସ୍ ଏଠି ଶୋକ ନାଟକ ବ୍ୟବସାୟ ବୋଲି ସାରା ଦୁନିଆଁ ଆଜ ଶୋକମୟ ହେଇଯିବ କି ? ହଉ, ତୋ ଶୋକ ମୁଁ ଢେର୍ ଦେଖିଲିଣି । ଯା, ଗେଟ୍ ବନ୍ଦ ହବ । (ଶୋକ ଅଶ୍ରୁଳ ନୟନରେ ମ୍ୟାନେଜରଙ୍କୁ ଚାହିଁବ) ଶୁଣୁନାହିଁ ମୋ କଥା ? (ରାଗରେ) ବାହାର ଏଠୁ ଯା !

(ଶୋକ ଧୀରେ ଧୀରେ ଯିବାକୁ ଆରମ୍ଭ କଲା । ମେନେଜର ଅନ୍ୟଆଡ଼େ ବୁଲିଗଲେ ।)

ଶୋକ : (ଯାଉ ଯାଉ) ସେ ଘରେ ତ ଆଉ ବନ୍ଧୁ ନାହାନ୍ତି । କୁଆଡ଼େ ଗଲେ କୋଉଠି ରହିଲେ ତାହାକୁ ପଚାରିବି ?

(ବାହାରକୁ ଚାଲିଗଲା)

---

## ଦୃଶ୍ୟ—ଛଅ

[ ମାଧବର ଘର । ଉପସ୍ଥିତ ମଦନ ଓ ଅନନ୍ତ । କିଛି ସମୟ ନୀରବତାରେ କଟିଗଲା । ଉଭୟଙ୍କୁ ଦେଖିଲେ ଜଣାଯାଏ, ମଦନ ଏ ଘରେ ଅସ୍ୱସ୍ତି ବୋଧ କରୁନଥିଲେ ହେଁ ଏଥିରୁ ଗମ୍ଭୀର ଜଣାପଡ଼ୁଥାଏ । ଅନନ୍ତ କିନ୍ତୁ ଉତ୍ସାହ ଓ ଆଶାବାଦ୍ୟସବେ କଥାବାର୍ତ୍ତା କରୁଛି । ]

ଅନନ୍ତ : କ'ଣ ?

ମଦନ : ମତେ ପଚାରୁଚୁ ?

ଅନନ୍ତ : (ସ୍ମିତ ହସି) ଏ ପ୍ରଶ୍ନ ବି ମତେ ପଚାରୁଚୁ ?

ମଦନ : କିଛି ଦରକାର ନାହିଁ । ମତେ ଆଉ କିଛି ନ ପଚାରି, ତୋର ଯାହା କିଛି କହିବାର ଅଛି ବି କହିଯା ।

ଅନନ୍ତ : ମୁଁ ଠିକ୍ ଜାଣିଥିଲି ଯେ, ଏଠି ଆଜି ଆମ ଭିତରେ ଯାହା କଥାବାର୍ତ୍ତା ହେବ, ତା'ର ନାୟକ—ତାର କେନ୍ଦ୍ରବିନ୍ଦୁ ହେଉଚୁ ତୁ । କିନ୍ତୁ ସତ୍ୟକଥା, ମାନେ ଯାହାସବୁ ତୋର କହିବାର କଥା, ସେସବୁ ତୁ କହିବାକୁ ବସିଲେ ବି ସ୍ପଷ୍ଟ କହିପାରିବୁନି—ଭିତରେ କୋଉଠି ଅଟକିଯିବ । ଅତଏବ ମତେହିଁ ସବୁ କହିବାକୁ ପଡ଼ିବ । ଅଚ୍ଛା, ମତେ ଖାଲି ତୁ ଏତିକି କହ—ତୁ ଏଠିକି, ମାନେ ଦାଦାଙ୍କ ଘରକୁ ଏଇ ଅନେକ ମାସରେ କେତେ ଥର ଆସିଲୁଣି ?

ମଦନ : (ଧୀରେ ଧୀରେ) ପାଞ୍ଚଥର ।

ଅନନ୍ତ : (ହସିଉଠି) ସାବାସ୍ !

ମଦନ : ହସିଲୁ କାହିଁକି ?

ଅନନ୍ତ : ହସିଲି ଏଇଥିପାଇଁ ଯେ, ତୁ ଏଠିକି କେତେଥର ଆସିଚୁ ସେଇ ହିସାବଟା ତୋ ନଖଦର୍ପଣରେ ରହିଛି—ଏଏ କିଛି କମ୍ କଥା ନୁହେଁ । ଏବେ କହ ଆଜ କାହିଁକି ଆସିଚ

ମଦନ : ସେକଥା ତୁ ଜାଣୁ, ମୁଁ ଜାଣେ—ଏଠି ଏ ଘରେ ସମସ୍ତେ ଜାଣନ୍ତି ।

ଅନନ୍ତ : ସେଇ କଥା—ତୋ ସହିତ ମାଧବୀର ବିବାହ ପ୍ରସ୍ତାବ ପଡ଼ିଲା—ଯାହା କିଛି ଆଲୋଚନା ହେବାର କଥା ହୋଇସାରିଛି । ମାଧବୀର ଭାଇ ଜର୍ମାନୀରୁ ଫେରିବା ପରେ ବିବାହର ଦିନ ଠିକ୍ ହେବ । ଆଉ କେବଳ ଗୋଟାଏ କଥା—ସେଥିପାଇଁ ଦାଦା ନୁହନ୍ତି କି ମାଧବୀ ନୁହେଁ—ମୁଁ—ମୁଁ ତୋତେ ଏଠିକି ଡାକି ଆଣିଛି...(ମଦନ ମୁହଁ ତଳକୁ କଲା ।) ଏ କ'ଣ ? ମୁହଁ ତଳକୁ କଲୁ କାହିଁକି ?

ମଦନ : (ଟିକିଏ ରହି) ନା । (ମୁହଁ ଟେକିବ)

ଅନନ୍ତ : ମୁଁ ଜାଣେ—ସେଇ ଗୋଟାଏ କଥା । ତୋ ମତରେ ଏମାନେ ଧନୀ, ତୁ ଗରିବ ! ଏଇ ପ୍ରଶ୍ନଟାହିଁ ଏବେ ବି ତୋ ବିବେକକୁ ଦଂଶନ କରୁଛି ।

ମଦନ : ସବୁ ଏଇ ପ୍ରଶ୍ନଟା ମୋ ମନରେ ଉଠିଥାଏ, ଯା'ର କି ଉତ୍ତର ତୁ ମତେ ଦେବୁ ?

ଅନନ୍ତ : ଏ ପ୍ରଶ୍ନର ଖୁବ୍ ସନ୍ତୋଷଜନକ ଉତ୍ତର ମୋ ପାଖରେ ଅଛି । ପ୍ରଥମେ ମୁଁ ତୋତେ କହିଦେବାକୁ ଚାହେଁ ଯେ, ଯେଉଁ 'ଧନୀ' ଶବ୍ଦଟା ତମମାନଙ୍କ ଅଭିଧାନରେ ଅଛି, ମାଧବୀ ସେପରି ଧନୀର ଝିଅ ନୁହେଁ । ଏ ପରିବାରକୁ ମୁଁ କହିବ ବେଶ୍ ଏକ ସ୍ୱଚ୍ଛଳ ପରିବାର । ପୁରୁଷ ପୁରୁଷ ଧରି, ଉଦ୍ୟମରେ ଦେହ ଝଟେଇ, ପରିଶ୍ରମ କରି ଏମାନେ ନିଜକୁ ଏକ ଅବସ୍ଥାପନ୍ନ, ସୁସ୍ଥ, ସମ୍ଭ୍ରାନ୍ତ ଆଉ ସ୍ୱଚ୍ଛଳ ଅବସ୍ଥାରେ ରଖିପାରିଛନ୍ତି । ଗହଣା ଓ ନଗଦ ଟଙ୍କା ଛଡ଼ା ଦାଦାଙ୍କ ଝିଅ ହିସାବରେ ମାଧବୀ ପାଇଛି ଗୋଟାଏ ଭଲ ଗାଡ଼ି, ନୟାପଲ୍ଲୀ ବାରଗୁଣ୍ଠ ଜମି ଉପରେ ଦୁଇ ମହଲା କୋଠା, ଆଉ ମଧୁପୁର ତୀର ବାଗବଗିଚା ପୋଖରୀ ସହିତ କେନାଲ କୂଳ ଚାଷଜମି...ଆଉ ଅଛି କ'ଣ ?

ମଦନ : (ଟିକିଏ ଇତସ୍ତତଃ ହୋଇ) ମୁଁ...

ଅନନ୍ତ : ଜାଣେ । ଏବେ ବି ତୋ କଥା ଅଟକିଯାଉଛି । କିନ୍ତୁ ମଦନ, ତୁ କ'ଣ ମୋର ଏ ଯୁକ୍ତିକୁ ଅସ୍ୱୀକାର କରିପାରିବୁ ଯେ, ତନୁ କେବେ କେବେ

କେହି କୋଉ ଦିନ ଗରିବ କରିଦେଇନ କି ସବୁ ଧନୀ ଅନ୍ୟମାନଙ୍କୁ ଶୋଷଣ କରି ଧନୀ ହୋଇନାହାନ୍ତି । କମ୍ୟୁନିଜମ୍ ପରି ଏଇଟା ଗୋଟାଏ ଚକ୍ର—ଏମିତି ଘୂରିଚାଲିଛି । ଧନୀ ଗରିବ ହେଉଛନ୍ତି, ଗରିବ ଧନୀ ହେଉଛନ୍ତି । ତା'ପରେ ଏ ପ୍ରଶ୍ନ ଉପରେ ମୋର ଆଉ କିଛି କହିବାର ନାହିଁ ।

ମଦନ : (ଟିକିଏ ବୁଲିଚାଲି ଚାଲ । ତାପରେ ନିଜକୁ ସହଜ ଅବସ୍ଥାକୁ ଆଣି କହିଲା) ଅନନ୍ତ…

ଅନନ୍ତ : କ'ଣ କିଛି କହିବୁ ?

ମଦନ : (ପୂର୍ବପରି ସହଜସ୍ୱରରେ) ନା, ମୋର ଆଉ କିଛି କହିବାର ନାହିଁ ।

ଅନନ୍ତ : ଏଇ ମାଧବୀ ! କ'ଣ ସେ ? ସାଧାସିଧା ସୁନ୍ଦରୀ ଝିଅ—ଶିକ୍ଷିତା । ଇଣ୍ଟେଲେକ୍ଚୁଆଲ କହିଲେ ମଧ୍ୟ କେହି ମତେ ଦୋଷ ଦେଇପାରିବ ନାହିଁ । ଜାର୍ଣ୍ଣୀ ନାହିଁ କି ବଦଳେଇ ନାହିଁ । ଠିକଟା ଖବରକାଗଜ ଆଉ ବୁଧ ପଞ୍ଝଟା ପିରିଓଡ଼ିକାଲ୍ କିଣେ । କିନ୍ତୁ ପ୍ରତ୍ୟେକ ତିନି ମାସରେ ଥରେ ପୁରୁଣା ଖବରକାଗଜ ବିକ୍ରୀ କରେ । ସବୁଦିନେ ପଇଡ଼ ଭାଙ୍ଗିବା ଖାଇବାର ଅବସ୍ଥା ହୁଏତ ଅଛି, କିନ୍ତୁ ବୃଥା ଗୋଟେ ସୁନ୍ଦର ଡାଳା ନଷ୍ଟ କରେଇ ଦେବନାହିଁ । ନିଜ ବୁଦ୍ଧି ଖଟେଇ ମଧୁପୁର ବଗିଚାରୁ ବର୍ଷକୁ ପ୍ରାୟ ପଚିଶ ହଜାର ଟଙ୍କା ପାଏ । ଏଇ ଦୃଷ୍ଟିରୁ ଦେଖିଲେ ମାଧବୀ ହେଉଛି ଅସାଧାରଣ ଝିଅ । ଏଥିରେ କ୍ୟାପିଟାଲିଷ୍ଟ-ପ୍ରୋଲେଟେରିଏଟ୍ ପ୍ରଶ୍ନ ଉଠୁଛି କେଉଁଠି ?…ହଁ, ତୁ ଆଜି ଘରେ ତ ଏଇଠି ଖାଇବୁ ?

ମଦନ : ତୋର ତ ଆଜି ଆଉ କୁଆଡ଼େ ଯିବାର ପ୍ରୋଗ୍ରାମ୍ ନାହିଁ ?

ଅନନ୍ତ : ନା, ମୁଁ କୁଆଡ଼େ ଯାଉନି । ହଁ…ତୋର ଭବିଷ୍ୟତ…ତୁ ଲେଖାଲେଖି କରିବୁ—କି ରାଜନୀତି କରିବୁ—କି ଆଉ କଣ କରିବୁ—ସେ ବିଷୟରେ ମାଧବୀର କିଛି ଆପତ୍ତି ନାହିଁ । ସେ ତୋ ଉପରେ ସବୁ ଛାଡ଼ିଦେଇଛି ।

ମଦନ : (ମୃଦୁ ହସି) ତୁ କ'ଣ କହୁଚୁ ?

ଅନନ୍ତ : (ଖୁସି ମନରେ) ମୁଁ ଖାଲି କହିବ ନାହିଁ ତ—ଯେହେତୁ ମାଧବୀ ମୋର ସାନଭଉଣୀ, ମୁଁ ତୋତେ ଉପଦେଶ ଦେବ ।

ମଦନ : ଉପଦେଶ !

ଅନନ୍ତ : ହଁ, ଆମ ଜାତ—ମାନେ ତୋ' ମୋ ଶ୍ରେଣୀର ଓଡ଼ିଆ ଜାତ—ଅନେ ବ୍ୟବସାୟ କରିପାରିବାନି । ତୁ କମ୍ପିଟିଟିଭ୍ ପରୀକ୍ଷା ଦେଲେହିଁ ଚାକିରି ପାଇବୁ—ଏ ଭରସା ମୋର ଅଛି । କିନ୍ତୁ ସେଇ ସଙ୍ଗେ ସଙ୍ଗେ ଚାକିରିରେ ବିପଦ ଅଛି ବୋଲି ମୁଁ କହୁଛି ।

ମଦନ : ବିପଦ !

ଅନନ୍ତ : ଦାଦାଙ୍କ ପରି ଭଦ୍ର ଅନେକ ଚାକିରି ଜୀବନ କଟେଇଲେ ଜଳ ଉପର ସବୁଠି ଶଠ୍ ବର୍ତ୍ତିଗଲେ—ତୁ ଉଭୟେ ହେଉଛିବୁ । ଅଜି ଚାକିରିରେ ଶ୍ରେଷ୍ଠ ଧପ୍‌ପାବାଜ ଭଲେ ବଦ୍‌ନାମ ହେଉ ଜେଲ ଯାଇପାରୁ । (ମଦନ ହସୁଥାଏ) ଚାକିରିରେ ଶ୍ରେଷ୍ଠ ପାଇଁ ଯେଉଁ ଶିକ୍ଷା ଦରକାର, ସେ ଶିକ୍ଷା ତୋର ନାହିଁ ।...ସେଥିପାଇଁ ମୋର ଉପଦେଶ ହେଲା—ତୁହିଁ ତ ରାଜନୀତି କର । ରାଜନୀତି ହେଲା ସବୁଠୁ ନିରାପଦ ପନ୍ଥା ।

ମଦନ : (ମୁହଁପଟେ ହସି ହସି) ରାଜନୀତି...ନିରାପଦ ପନ୍ଥା !!

ଅନନ୍ତ : ନିଶ୍ଚୟ । ତୁ ଯଦି ସଚ୍ଚୋଟ ରାଜନୀତି କରୁ, ତା'ହେଲେ ଚିରଦିନ ତୋର ସ୍ଥାନ ଜେଲରେ ରହିବ ହିଁ ରହିବ । କାରଣ ଗାନ୍ଧୀ, ଜବାହର, ଗୋପବନ୍ଧୁଙ୍କ ଜୟଜୟକାର କରିବା ପାଇଁ ଏବେ ବି ଏ ଦେଶରେ ଲୋକ ଅଛନ୍ତି । ଆଉ ତୁ ଯଦି ରାଜନୀତିରେ ଅସତ୍ ହେଉ—ଦୁର୍ନୀତି, ଦୁରବ୍ୟର କରି କ୍ଷମତାରେ ରହୁ କି ବିରୁଦ୍ଧଦଳର ନେତା ହୋଇ ରହୁ, ଖୁବ୍ ଜୋର୍‌ରେ ଗୋଟାଏ କମିଶନ୍ ବସିବ । କିଛି ଚିନ୍ତା ନାହିଁ । କମିଶନ ତାର ସେ ବସିଥିବ—ତୁ ତୋର ବସିଥିବୁ । ସୁବିଧା ଦେଖି ଦି' ଚାରିଟା ଫରେନ୍ କଣ୍ଟ୍ରି ବୁଲି ଆସିବୁ । ତା'ପରେ ଦେଖିବୁ ତୁ ସବୁ ଜଞ୍ଜାଳରୁ ମୁକ୍ତ । (ଦୁହିଁଙ୍କର ହସ)

ମଦନ : କମ୍ପାନୀ ଅଫିସରେ ଚାକିରି କରି ଯେତେବେଳେ ସମୟ ପାଉଛୁ ଏସବୁ କଥା ଚିନ୍ତା କରିବାପାଇଁ ?

ଅନନ୍ତ : ଯୋଉ ଦିନଠୁ ଏ ଘରେ ତୋର ପାଦ ପଡ଼ିଲାଣି, ତୋ ପାଇଁ ମୋର ଆଉ ସମସ୍ୟାର ଅଭାବ ନାହିଁ ।

ମଦନ : (ହସି) ଆଜ୍ଞାପ୍ । ମତେ ଏବେ କ'ଣ କରୁଚୁ କହ !

ଅନନ୍ତ : (ମଦନ ପାଖକୁ ଯାଇ, ତାକୁ ସ୍ନେହପୂର୍ଣ୍ଣ ଆଲିଙ୍ଗନ କରି) ମଦନ ! ମାଧବୀ ସହିତ ତୋର ବାହାଘର ହେଉଛି । ଆମେ ଦୁହେଁ ଅଭାଜନ ବନ୍ଧୁ । ତଥାପି ତୁ ବୁଝି ପାରୁନୁ ନାହିଁ ମୁଁ ଏଥିରେ କେତେ ଖୁସି— ମାଧବୀ ତୋ ପ୍ରତି ଆକୃଷ୍ଟ, ତୁ ମାଧବୀକୁ ଦେଖି ମୁଗ୍ଧ—ବାସ୍— ଏତିକି । ମୋର ଆଉ କିଛି କହିବାର ନାହିଁ ।

(ଅନନ୍ତ ଯିବାକୁ ବାହାରିଲା)

ମଦନ : ତୁ ଯାଉଚୁ ?

ଅନନ୍ତ : ହଁ ···ଏଇ ଦାଦାଙ୍କ ପାଖକୁ ଯାଉଚି ।

(ଠିକ୍ ଠିକ୍ ମାଧବୀ ଆସିଲା)

ମାଧବୀ : ଅନୁଭାଇ···

ଅନନ୍ତ : ଦାଦା ମତେ ଖୋଜୁଚନ୍ତି ?

ମାଧବୀ : ହଁ ।

ଅନନ୍ତ : ଆଚ୍ଛା ।

(ଅନନ୍ତ ଚାଲିଗଲା ।) ମାଧବୀ କିଛି ମୁହୂର୍ତ୍ତ ସେଇ ଅଡ଼କୁ ଚାହିଁ କଥା ଆରମ୍ଭ କଲା । ବାହାର ପାଖରେ ସଙ୍କୋଚର ଅବକାଶ ନାହିଁ ।)

ମାଧବୀ : ଅନୁଭାଇ କ'ଣ ସବୁ କହୁଥିଲେ ?

ମଦନ : ଅନେକ କଥା—

ମାଧବୀ : (ଈର୍ଷା ହେଲାଭଳି) ଅନେକ କଥା !

ମଦନ : (ଖୋଲଖୋଲ ସ୍ୱରରେ) ହଁ, ଏଥର ତମ ପାଳି···

ମାଧବୀ : (ଭାବ୍ ଅନ୍ତରଙ୍ଗତାର ସହ) ମୋ ପାଳି ଶେଷ ହେଇଯାଇଚି । ମୋର ଆଉ କିଛି କହିବାର ନାହିଁ । ଖାଲି ଏତିକି କହୁଚି, ମୁଁ ତୁମ ପ୍ରତିଭାରେ ମୁଗ୍ଧ—ତମ ପୌରୁଷରେ ମୁଗ୍ଧ । ମୁଁ ତୁମକୁ ଭଲପାଏ ।

(ଏହାପରେ ଏକ ଅନୁରାଗପୂର୍ଣ୍ଣ ଦୃଷ୍ଟିରେ ଦୁହେଁ ଦୁହିଁଙ୍କୁ ଚାହିଁରହିଲେ ।)

ମଦନ : ଯିବା ?

ମାଧବୀ କୋଉଠିକି ?

ମଦନ : ଭୁଲି ଗଲ ମଧୁପୁର ଯିବାକୁ କହୁଥିଲନା ?

ମାଧବୀ : (କହୁଟା ଚପଳ ଭଙ୍ଗୀରେ) ମଧୁପୁର ! ସେଠି ଯେ ଜୋତଦାରୀ ଅଛନ୍ତି ।

ମଦନ : (ଅଳପ ହସି) ଜୋତଦାରମାନଙ୍କୁ ଭୟ ତମର ! ସେମାନେ ତମ ଜମିକୁ ବେଦଖଲ କରିନେବେ ।

ମାଧବୀ : ଶୁଣ —ଆମ ରାଜନୀତି କ୍ଷେତ୍ରରେ ନିଶ୍ଚୟ କିଛି ବଙ୍କ ଲୋକ ଅଛନ୍ତି । କିନ୍ତୁ ତାଙ୍କର ବଙ୍କତା ପାଇଁ ଆମର ପ୍ରଚଳିତ ରାଜନୀତି କିଛି ଖୋରାକ ଯୋଗାଇପାରୁନାହିଁ । ସେଥିପାଇଁ—"ଲଙ୍ଗଳ ଯାର ଜମି ତାର"—"ରୋଟି ଦୋ କପଡ଼ା ଦୋ, ନେହିଁ ତୋ ଗାଦି ଛୋଡ଼ ଦୋ" ପ୍ରଭୃତି ଶସ୍ତା ସ୍ଲୋଗାନ ଦେବାକୁ ବାଧ୍ୟ ହେଉଥାନ୍ତି । ତମେ ମଧୁପୁର ଚାଲ ଦେଖିବ, ଆମ ଜୋତଦାରମାନେ କପରି ଲୋକ—ତାଙ୍କର ପ୍ରକୃତ ସ୍ୱଭାବ କଣ !

ମଦନ : କଟକରୁ ମଧୁପୁର ଠିକ୍ କେତେ ବାଟ ?

ମାଧବୀ : ଆମେ ଗାଡ଼ିରେ ଅଠର ମାଇଲ୍ ଯିବା । ତା'ପରେ ତିନି ମାଇଲ୍ ଚାଲ ଚାଲ ।

ମଦନ : ଓ, ମଟର ରାସ୍ତା ନାହିଁ ।

ମାଧବୀ : ନା...ନାହିଁ କି କେବେ ହେଇ ପାରିବ ନାହିଁ । ରାସ୍ତା ନେବାକୁ ହେଲେ ଧାନବିଲ ପୋତିବାକୁ ହେବ- ତୋଟା ଗଛକୁ କାଟିବାକୁ ପଡ଼ିବ । କିନ୍ତୁ ଯେଉଁ ବିଲରୁ ସୁନା ଫଳୁଛି ତାକୁ ଆମେ କେବେ ପୋତେଇଦବୁନି କି ଯେଉଁ ଗଛ ଆମ ପରିବାରର ଲୋକପରି ତାକୁ କେବେ କଟେଇ ଦବୁନି । ପାଣି ପଙ୍କ କାଦୁଅରେ ପଶି ଯିବା ଆସିବା କରିବୁ । (ମଦନ ମୁହଁକୁ ଚାହିଁ) କଣ ଧାନ ବିଲରେ ପଶି ଯାଇପାରିବତ ? ଏବେ ବିଲରେ ପାଣି ଅଛି ।

ମଦନ : କେତେବେଳେ ଯିବା ?

ମାଧବୀ : ଏଇ ବର୍ତ୍ତମାନ ।

ମଦନ : ତମର ଏଇ ସୁଖ ଗାଁ ମଧୁପୁର—ତମେ ଖଣ୍ଡ ପ୍ରତି ବର୍ଷ ଯାଅ ?

ମାଧବୀ : ଖାଲି ପ୍ରତିବର୍ଷ ନୁହେଁ—ପ୍ରତି ଋତୁ ଋତୁରେ ଯାଏ । ଧାନ ବୁଣା ବେଳେ, ରୁଆ ବେଳେ—ବଛାବଛୁ ବେଳେ—ଅମଳ ବେଳେ । ଶାରଦ, ଡାଲୁଅ, ରବି ଫସଲ……

ମଦନ : କିନ୍ତୁ ଭାଗଚାଷୀମାନେ ତ ଚାଷକରୁଛନ୍ତି —ତମର ଯିବା ଦରକାର ବା କ'ଣ ?

ମାଧବୀ : ଖୁବ୍ ଦରକାର । ମତେ ଦେଖିଲେ ଚାଷୀମାନଙ୍କର ଆନନ୍ଦ ଉତ୍ସାହ ବଢ଼ିଯାଏ । ମୁଁ ଜମିର ମାଲିକ—ସେମାନେ ଜମିର ଚାଷୀ । ମୁଁ ଠିକ୍ କହିପାରିବି ନାହିଁ କେମିତି ତୋତେ ଭାଷାରେ ଆମ ଭିତରେ ସମ୍ପର୍କ ଏମିତି ମଧୁର —ଏମିତି ନିବିଡ଼ ହୋଇପାରିଛି । ମଧୁପୁର ନ ଯାଇ ମୁଁ ରହିପାରିବି ନାହିଁ । ମୋ ଯିବାର ଦିନେ ଅଧେ ଡେରି ହୋଇଗଲେ, ସେମାନେ ସମସ୍ତେ ଭେଟିବ ଚାଲିଆସିବେ ।

ମଦନ : ଏବେ ବାହାରିବା ତ ?

ମାଧବୀ : ହଁ, ଯିବା ଆଗରୁ ଗୋଟେ କଥା ତମକୁ କହିରଖୁଛି ।

ମଦନ : କି କଥା ?

ମାଧବୀ : ଖୁବ ସୁନ୍ଦରକଥା—ଖୁବ୍ ଏକ୍ସାଇଟିଂ । ଏବେ ବର୍ଷାଦିନ—ଜମିରେ ପାଣିଭର୍ତ୍ତି—କେତେବେଳେ ହିଡ଼ ଉପରେ ତ କେତେବେଳେ ପାଣି ଭିତରେ ଆମେ ବୁଲି ବୁଲି ଯିବା । ଏଇ ସୁଯୋଗରୁ ମୁଁ ଗୋଟିଏ କଥା କହୁଚି ।

ମଦନ : ପାଣିଭର୍ତ୍ତି ଧାନବିଲ ଭିତରେ ବୁଲି ବୁଲି ଯିବାରେ ସେ କି ଆନନ୍ଦ କି ଏକ୍ସାଇଟମେଣ୍ଟ ଅଛି…

ମାଧବୀ : ଆରେ ଶୁଣ । ଗତବର୍ଷ ଠିକ୍ ଏଇ ସମୟରେ ମୁଁ ମଧୁପୁରରୁ ଫେରୁଚି । ଧାନବିଲ ପାଣି ଭିତରେ ପାଣି ଚବ୍ ଚବ୍ କରି ଆସିବାକୁ ମତେ ଖୁବ ଭଲଲାଗୁଥାଏ । ହଠାତ୍ ପାଣି ଭିତରୁ ଗୋଟାଏ ବେଙ୍ଗ ଡେଇଁପଡ଼ି ମୋ ଜାଙ୍ଘ ଉପରେ ବସିପଡ଼ିଲା ।

ମଦନ : ମାଈଁ ଗଡ୍ !

ମାଧବୀ : କଥା ଆରମ୍ଭରୁ "ମାଈଁଗଡ୍" କହୁପକାଉଛ—କଥାଟା ମୁଁ ଶେଷ କରନ୍ତ...

ମଦନ ଆଉ ପୁଣି ଶେଷ କ'ଣ ? ବେଙ୍ଗଟାଏ ଡେଉଁପଡ଼ି ତମ ଜାଙ୍ଘ ଉପରେ ବସିଲା...

ମାଧବୀ : (ସଙ୍ଗେ ସଙ୍ଗେ) ବେଙ୍ଗଟା ମୋ ଜାଙ୍ଘ ଉପରେ ବସିବାର ଗୋଟାଏ ମିନିଟ୍ ସେକେଣ୍ଡ ଭିତରେ ଗୋଟାଏ ସାପ ପାଣି ଭିତରୁ ଡେଉଁପଡ଼ି ବେଙ୍ଗଟାକୁ ମୋ ଜାଙ୍ଘରୁ ନେଇଗଲା ।

(ମଦନ ହତବାକ୍ ହୋଇ କେବଳ ମାଧବୀର ମୁହଁକୁ ଚାହିଁ ରହିଲା । ତା' ପାଟିରେ କଥା ନାହିଁ ।)

ମାଧବୀ : କ'ଣ ହେଲା, କିଛି କହୁନ ଯେ ? ମୁଁ ତ କହୁଛି ଏଇଟା ଗତ ବର୍ଷର କଥା ।

ମଦନ : ସାପଟା...କି ସାପ ?

ମାଧବୀ : (ଅଳ୍ପ ହସି) ଧଣ୍ଡ, ଯାହାର ଆଦୌ ବିଷ ନାହିଁ । ମଧୁପୁରରେ ଛୁଆ ପିଲାମାନେ ତ ଧଣ୍ଡ ସାପକୁ ଧରି ଆଣି ଖେଳନ୍ତି ।

ମଦନ : ସାପଟା ଯଦି ବିଷଧର ହୋଇଥାନ୍ତା ?

ମାଧବୀ : (କିଛି କ୍ଷଣ ମଦନ ମୁହଁକୁ ମୁଗ୍ଧ ଦୃଷ୍ଟିରେ ଚାହିଁ) ସାପଟା ଯଦି ବିଷଧର ହୋଇଥାନ୍ତା !!

ମଦନ : ହୁଁ......

ମାଧବୀ : ଏବେ ତ ଆମେ ମଧୁପୁର ଯାଉଛେ । ରାସ୍ତା ଉପରେ ଗାଡ଼ି ରଖି ବିଲ ଭିତରେ ପଶିଯିବା । ବିଲରେ ପାଣି ଅଛି । ଆଣ୍ଠୁଏର ପରି ପାଣି ଭିତରେ ଗୋଡ଼ ଚଳ୍ ଚଳ୍ କରି ଆମେ ଯିବା, ଆଉ ମୁଁ ଜାଣେ ଧାନ ଖେତରେ କେଇଟି ବିଷଧର ତମି ସାପ ଅଛନ୍ତି ।

ମଦନ : ଏ କଥା ଜାଣି ସୁଦ୍ଧା ତମ ମନରେ ଭୟ ଆସୁନ ?

ମାଧବୀ : ସେଦିନ ଯେତେବେଳେ ସାପଟା ମୋ କାନ୍ଧ ଉପରୁ ବେଙ୍ଗକୁ ନେଇଗଲା—ସେଇଟା ଧଣ୍ଡସାପ ଜାଣି ବି ଯେତେବେଳେ ମୁଁ ଭୟରେ କମ୍ପି ଉଠିଥିଲି । ଛୁଡ ଅବୁଆଏ—ଦେହସାରା ଝାଳ । ଜନ୍ମ ଆଜ......

ମଦନ : କୁହ...(ମାଧବୀର ଦୁଇ କାନ୍ଧ ଉପରେ ହାତରଖି)

ମାଧବୀ : ଯୋଉ ମୁହୂର୍ତ୍ତରେ ମୁଁ ତୁମକୁ ଭଲ ପାଇଛି, ସେ ମୁହୂର୍ତ୍ତରୁ ମୁଁ ମୋର ଏଇ ତେଇଶି ବର୍ଷର ଦେହଟାର ଦାୟିତ୍ୱ ମୋ ଉପରେ ଆଉ ରଖିନି—ମୋର ସମସ୍ତ ସତ୍ତା ତମଠି ଲୋପ ପାଇ ଯାଇଛି । ଆଜ ବିଷଧର ସାପ ଆସିବ ଆସୁ—ତା ପାଇଁ ତ ମୋର ଡରର ହେଉ ଆଉ କିଛି ନାହିଁ !

(ମଦନର ଛାତି ଉପରେ ମାଧବୀ ମଥା ରଖିଲା । ଦୂରେଇ ମୃତ୍ୟୁ)

---

## ଦୃଶ୍ୟ—ପାଞ୍ଚ

[ଏକ ଗଳି ରାସ୍ତା । ସମସ୍ତ ଅପରାହ୍ନ । କୁମୀ ଆସିଲା । ଟିକଏ ପରେ ପଛକୁ ଫେରି ଚାହିଁ ଅପେକ୍ଷା କରି ଠିଆ ହେଲା । ଧୀରେ ଧୀରେ ଶୋଭା ଆସିଲା]

କୁମୀ : କ'ଣ ହେଲା ?…କ'ଣ ହେଲା ନାନୀ—ଚାଲିପାରୁନୁ ?

(ଶୋଭା କିଛି ନ କହି ଗୋଟିଏ ଜାଗାରେ ଠିଆହୋଇ ରହିଲା । ତାର ଅବସ୍ଥା ଯେପରି ଦୟନୀୟ ହୋଇପଡ଼ିଛି । ସେ କାହୁଁଟା ଝଡ଼ିଯାଉଛି—ମୁହଁ ଶୁଖିଯାଇଛି । କେଶବାସର ଠିକ୍‌ଠିକଣା ନାହିଁ—ଉପସ୍ଥିତ କ୍ଷୁତ୍ କ୍ଲାନ୍ତ ହୋଇପଡ଼ିଛି । ତଥାପି ତାର ଏ ଦୁରବସ୍ଥା ସେ ଯେପରି କାହାରିକୁ ଜଣେଇବାକୁ ଚାହେଁନା । ଦୁଏକ ପଦ କଥା କହିବାକୁ ଚେଷ୍ଟା କରୁଛି, କିନ୍ତୁ ପାଟି ଅଠା ହୋଇଯିବାରୁ କହିପାରୁନି ।)

କୁମୀ : (ବ୍ୟସ୍ତ ହୋଇ) କ'ଣ କିଛି କହୁନୁ କାହିଁକି ନାନୀ ?

ଶୋଭା : (ଓଠ ଚାଟି ଚାଟି) ନାହିଁରେ…

କୁମୀ : ତୋ ପାଟି ଶୁଖି ଅଠା ହୋଇଯାଉଛି…

ଶୋଭା : ନାହିଁ…ତୁ ରହ ।

କୁମୀ : ପାଣି ଆଣିବି…ପିଇବୁ ?

ଶୋଭା : ପାଣି !

କୁମୀ : ହଁ ।

ଶୋଭା : କୋଉଠୁ ଆଣିବୁ ?

କୁମୀ : ଏଇ ସେ ଦୋକାନରୁ । ତୁ ରହ—ମୁଁ ଆଣେ । (କୁମୀଯାଇ ପ୍ରାୟ ସଙ୍ଗେ ସଙ୍ଗେ ପତ୍ର ଠୋଙ୍ଗାରେ ପାଣି ଆଣି ଆସିଲା ।) ନେ ପିଇଦେ, ବୋହିଯିବ ।

(ଶୋଷ ପାଣି ପିଇଲା । ତା ମୁହଁରେ କ୍ଷୀଣ ହସର ରେଖା) ହସୁଚୁ ? ତୋ ଅବସ୍ଥା ଆସି କ'ଣ ହେଲାଣି !

(ଶୋଷ କୁମୀକୁ ଅତି ଆଦରରେ କୋଳକରି ନିଜ ଛାତିକୁ ଆଉଜେଇ ଆଣିଲା । ସେହି ଅବସ୍ଥାରେ କୁମୀ କାନ୍ଦିଲା ।)

ଶୋଷ : କୁମୀ, ତୁ କାନ୍ଦୁନେ ନେଇଁ କୁମୀ—କାହିଁକି କାନ୍ଦୁଚୁ ?

କୁମୀ : (ଶୋଷର ଚିବୁକ ଧରି) ତୁ କାହିଁକି ଏମିତି ହସୁଚୁ କହିଲୁ ?

ଶୋଷ : କାହିଁକେ ମୋର କଷ୍ଟ ହେଉନି ।

(କଣ୍ଟାଗଲା ଶୋଷ ଅଳସାଇଚି । ସେ ସେଇଠି ତଳେ ବସିପଡ଼ିଲା । କୁମୀ ମଧ୍ୟ ଶୋଷ ପାଖରେ ବସିଲା ।)

କୁମୀ : ଅକସ ଇ ବସିପଡ଼ିଲୁ ତ ? ଚାଲିବାକୁ ବଳ ପାଉନାହିଁ ବା ? (ଶୋଷ ଖାଲି କୁମୀ ମୁହଁକୁ ଚାହିଁଲା) ତୁ ସତ କହିଲୁ ନାନ୍, ମୋ ମୁଣ୍ଡ ଖାଉଚୁ ସତ କହ—ତୁ କାଲି ରାତିରେ ଖାଇଚୁ ? କାଲି ଦିନବେଳା ତ ଖାଇ ନଥିଲୁ—ରାତିରେ ଖାଇଚୁ ?

ଶୋଷ : ତୁ ରହ, ଏଠି ଅମେ ଘଡ଼ିଏ ବସିବା, ସେଇଠୁ ଯିବା ।

କୁମୀ : (କ୍ରୋଧ ଓ ଅଭିମାନରେ ଜଳି ଉଠି) କୁଆଡ଼େ ଯିବୁ ? ବାବୁଙ୍କୁ ଖୋଜିବାକୁ ? ସେଇ ଥେଟର ହେବାଦିନୁ ଏ ସହରର ଗଳିକନ୍ଦି ତୁଇ ତାଙ୍କୁ ଖୋଜୁଚୁ । ଭିକମାଗିବା ନାଁ ଧରୁନୁ । ମୋ ବୋଉ ତତେ ଆଉ ପାଖରେ ପୂରେଇ ଦଉନି । ତୋ ସାଙ୍ଗରେ ମୁଁ ବୁଲୁଚି ବୋଲି ବୋଉଠୁ ମାଡ଼ ଗାଳି ଖାଉଚି !

ଶୋଷ : (କୁମୀକୁ ସ୍ନେହ ଆଦର କରି) କୁମୀ, ମୋ ସୁନାଟା !

କୁମୀ : (କାନ୍ଦି କାନ୍ଦି) କାଲି ସଞ୍ଜରେ ବୋଉଠୁ ମାଡ଼ଖାଇ ମୁଁ ଉପାସରେ ଶୋଇପଡ଼ିଲି । ତୁ ତ ସେମିତି ଭୋକିଲା ପେଟରେ ଶୋଇଥିଲୁ । ଆଜି ସକାଳୁ ମୁଁ ତ ଦ'ଟା ପଖାଳ ଖାଇଚି—ତୁ ସେମିତି ଭୋକିଲା ପେଟରେ ଅଛିଲୁ । ଦ'ଦିନ ହେଲା ଉପାସ—ଚାଲିପାରୁନୁ । କୁଆଡ଼େ ଯାଇ ତାଙ୍କୁ ଖୋଜି ବୁଲିବୁ କହୁଚୁ ? ସେ ଯେମିତି ତୋ ବାଟ ଚାହିଁ ଜଗିବସିଚି ? ଏମିତି ନଖାଇ ନପିଇ ଶୁଖି ଶୁଖି ମରିଯିବୁ ସିନା !

ଶୋଷ : (କୁମୀର ମୁହଁକୁ ଅନାଇ ଦେଇ) ନାଇଁକେ, ମୁଁ ମଣକନାହିଁ । ତ'ହେଲେ ଉପାୟରେ କ'ଣ ଅମଲିଆ ଲୋକ ମରନ୍ତି ?

କୁମୀ : ମୋର ଗୋଟେ କଥା ରଖିବୁ ?

ଶୋଷ : ତାହାପରୁ କ'ଣ ମାଗିଅଣି ମତେ ଖୁଆଇବୁ—ଏଇ କଥା ?

କୁମୀ : (ଖୁସିରେ) ହଁ ।

ଶୋଷ : ହଉ ଯା' ।

କୁମୀ : ତୁ ଆ । ଏଇ ସେ ବାବୁଘର ଏପଟ ପିଣ୍ଡାରେ ବସିବୁ । ମୁଁ ଯେମିତ ଯୋଉଠୁ ହେଲେ······

(ଏତିକିବେଳେ ଜଣେ ଭଦ୍ରଲୋକ ଆସିଲେ । କୁମୀ ଚଟ୍‌କିନା ଉଠିଯାଇ ତାଙ୍କୁ ଭିକମାଗିଲା)

କୁମୀ : (ହାତ ପତେଇ) ବାବୁ···

(ଭଦ୍ରଲୋକ ନଶୁଣି ଚାଲିଯାଉଥିଲେ । ହଠାତ୍ କିଛିଏ ଅଟକି ପକେଟ ଅଣ୍ଡାଳି କୁମୀ ହାତରେ ପଇସାଦେଇ ଚାଲିଗଲେ)

ଶୋଷ : କୁମୀ !

କୁମୀ : ଏଇ ପାଞ୍ଚପଇସିଟାଏ ନେ ଶୋଷଜାଣ ।

ଶୋଷ : ତୁ କ'ଣ ଏମିତି ରାସ୍ତାରେ ହାତ ପତେଇ ଭିକ ମାଗିବୁ ?

କୁମୀ : ତୁ ତ'ହେଲେ ହେଲା ଉପାୟ—ମତେ ବୁଝିବାଟ କହୁ ଦେଖୁନ ।

ଶୋଷ : ହଉ ତୁ ଆ !

କୁମୀ : ଏଇ ଗୋଟେ ପୁଲିସବାବୁ ଏଣିକି ଆସୁଛି ।

ଶୋଷ : (ସେ ଦିଗକୁ ଚାହିଁ) ମୁଁ ଜାଣିଛି ତାକୁ—ଖାଲି ଭଲମଣିଷ ।

(ପୁଲିସ ପୋଷାକ କନେଷ୍ଟବଲଟି ଆସିଲା । ଶୋଷ ଓ କୁମୀ ଦୁହେଁ ତା' ଆଡ଼କୁ ଚାହିଁ ରହିଥାନ୍ତି । କନେଷ୍ଟବଲ ଆସି ଏମାନଙ୍କୁ ଦେଖି ଅଟକିଗଲା ।)

କନେଷ୍ଟବଲ : କ'ଣ ? କଣ ହେଉଛି ? (ଦୁହେଁ ନୀରବ) କାଲେ ତମ କାହାର ପାଖରେ କ'ଣ କଥା ନାହିଁ ।

(କନଷ୍ଟେବଲର ଆଖି ଶୋଭା ଉପରେ ପଡ଼ିଲା । ବେଶ୍ କିଛି ସମୟ ସେ ଶୋଭାକୁ ନିରୀକ୍ଷଣ କରି ରହିଲା ।)

କନଷ୍ଟେବଲ : ଭଲେ ରେ ! ତୁ ସେଇଟି ? ମୋ ବୁଦ୍ଧିଭେଦ ଏମିତି କାହିଁକି ହେଲାଣି—ଭଲେ ଚନ୍ଦ୍ରିହରନ ! କ'ଣ ହେଉଚି ତୋର ?

କୁନ୍ମୀ : ବାବୁ, ନାନୀ କାଲିଠୁ କିଛି ଖାଇନି ।

କନଷ୍ଟେବଲ : କାହିଁକି ? (ଶୋଭାକୁ ଲକ୍ଷ୍ୟକରି) ସେଦିନ କେତେ ସୁନ୍ଦର ଶାଢ଼ୀ ପିନ୍ଧିଥିଲୁ । ତୋର ସେଇ ବାବୁ—ସେ ଦିନ ଯାହା କଥା କହୁଥିଲୁ—ସିଏ ପରା ତୋ ଦେବତା ? ତା' ଘରର କ'ଣ ? ଦ'ଦିନ ହେଲା ଖାଇନୁ କାହିଁକି ?

କୁନ୍ମୀ : ପଇସା ନାହିଁ ।

କନଷ୍ଟେବଲ : ହାତରେ କ'ଣ ଧରିଚୁ ?

କୁନ୍ମୀ : (ହାତମୁଠା ଖୋଲି) ଏଇ ପାଞ୍ଚପଇସା ବାବୁ ।

କନଷ୍ଟେବଲ : ପାଞ୍ଚପଇସାରେ କ'ଣ ଛବୁଟା ଖାଇବୁ ? (ପକେଟରୁ ମନିବ୍ୟାଗ ବାହାର କରି ଖୋଲି ଦେଖିଲା) ଆଃ, ମୋ ପାଖରେ ବି କିଛି ନାହିଁ । ତେମେଇବୁଲକ ହ୍ୟାପ୍ କାହିଁକି ଯେ ଏମେତେ ହଉଚ ! ସେଦିନ ରାତିରେ ଏଇଟାକୁ ଦେଖି ମୁଁ ଜାଣିପାରିଥିଲି ଏଇଟା ଗୋଟାଏ ଭଲଝିଅ—ନଖାଇ ନପିଇ ତା ଅବସ୍ଥା କ'ଣ ହେଲାଣି ଦେଖ ! ଆଉ ତୁ ତ ଭିକ ମାଗିବା ଲୋକ, ତତେ କ'ଣ ଭିକ ମିଳୁନି ? (କଥା କହିବା ଅବସରରେ ମନିବ୍ୟାଗ ଦେଖୁଥାଏ । ମନିବ୍ୟାଗ ଭିତରୁ ଗୋଟିଏ ଟଙ୍କିଆ ନୋଟ ବାହାରିଲା) ଭଗବାନ ଭରସା—ଏ ନୋଟ ଖଣ୍ଡିକ କେମିତି କରିକରି ହେଇ ରହିଯାଇଥିଲା । ନେ, ଏ ଟଙ୍କାଟା ନେ । (କୁନ୍ମୀ ଟଙ୍କାଟା ନେଲା) କ'ଣ ଆଣି ନାନୀକୁ ଖାଇବାକୁ ଦେ' । (ଯାଉ ଯାଉ) କ'ଣ କହିବି କହିଲ—ଏମିତି ଲୁକାଣ ଅଛନ୍ତି ଯେ ଟଙ୍କା ପଇସା ମହାଜନ କାରବାର କରୁଚନ୍ତି—ଏଇଟାକୁ ଖାଇବାକୁ ମିଳୁନି । (ଚାଲିଗଲା)

କୁନ୍ମୀ : ନାନୀ ! ଏ ପୁଲିସବାବୁ କ'ଣ ତତେ ଏତେ କଥା କହୁଥିଲେ ?

ଶୋଷ : ହଁ, ତା' କଥା ଶୁଣିଲ—ଆଉ ପାଞ୍ଚୋଟି ଟଙ୍କା ଆଗ ପୋଲିସ ବାବୁଙ୍କୁ ବି ଦେଇଥିଲି—ଖୁଲି ଗିବା ।

କୁମୀ : ଗିବୁ କୁଆଡ଼େ ? ରହ, ମୁଁ ସେ ଦୋକାନରୁ କ'ଣ କଲିଖିଆ ଆଣେ ।

ଶୋଷ : (ଉଠି ଠିଆହୋଇ) ନାହିଁ, ମୋ ପାଇଁ ତୋ ବୋଉ ଚଟେ କେତେ ମାରୁଚ । ତୁ ଏ ଟଙ୍କାଟା ରଖ, ଅଳ ତାଙ୍କୁ ଦବୁ—ଆ ଗିବା ।

କୁମୀ : ହିଁ, ଏ ଟଙ୍କା ମୁଁ ବୋଉକୁ ଦେବ । ହେଲେ କହୁଦଉଚ, କାଲିଠୁ ଆମେ ପୁଣି ଭିକ ମାଗି ଗିବା । ନଇଲେ ଏ ଟଙ୍କାକୁ ମୁଁ ଚିର ଫୋପାଡ଼ି ଦେବ ।

ଶୋଷ : ହଉ ହେଲ, ତୋ'ଣ କଥା ରହିଲ । କାଲିଠୁ ପୁଣି ଭିକମାଗିଗିବା ।

କୁମୀ : ନାହିଁ, ଖାଲି ସେମିତ କହିଦେଲେ ହବନାହିଁ । ଦେଖୁଚୁ ତ, ସେ ବାବୁ କୁଆଡ଼େ ଗଲିଣି । ନଖାଇ ନପିଇ ତାଙ୍କୁ ଖୋଜ ବୁଲି ବୁ ନାଳ ନଦ ମାରେ ବୋଲଉଠି ପଡ଼ ମଲେ ବି ତୋ'ପାଇଁ ପଦେ କହିବାକୁ କେହ ନାହିଁ । ତୁ ମୋ ଧିଅଟୁଇଁ, ମୋ ମୁଣ୍ଡଛୁଇଁ କହ, କାଲିଠୁ ଭିକମାଗି ଗିବା । ହାଜ ପତେଇ ଭିକ ମାଗିଲେ ପେଟ ଅପୁଖ ରହିବ ନାହିଁ । ମୋ ଧିଅଟୁଇଁ କହ......

ଶୋଷ : (ଆନ୍ତରକତା ସହ) କେଡ଼େ କଥାଟାଏ କହିଲୁ କେ ! ତୋ' ଧିଅ ମୁଣ୍ଡ ମୁଁ ଛୁଇଁବ ! କହିଲି ପରା, କାଲିଠୁ ପୁଣି ଭିକ ମାଗି ଗିବା । ନଖାଇ ନପିଇ କେଇ ଦନ ଆଉ ରହିବ ?...ଆ ।

(ଦୁହିଁଙ୍କର ପ୍ରସ୍ଥାନ)

---

# ଦୃଶ୍ୟ—ଆଠ

[ ମାଧବୀ ସହିତ ମଦନର ବିବାହ ହୋଇଯାଇଛି । ମାଧବୀ ଓ ମଦନ ମାଧବୀର ନିଜ ଘରେ ଆସି ରହିଛନ୍ତି । ବର୍ତ୍ତମାନର ଦୃଶ୍ୟ ହେଉଛି—ଏଇ ଘରର ବାହାର ବାରଣ୍ଡା । ସମୟ—ଦିନ ପ୍ରାୟ ଏଗାରଟା । ମାଧବୀ ଘର ଭିତରୁ ବାରଣ୍ଡାକୁ ଆସିବ । ବିବାହିତା ନାରୀର ବେଶ । ବାରଣ୍ଡାର ଗୋଟାଏ ପ୍ରାନ୍ତକୁ ଯାଇ ଠିଆହେବ । ]

ମାଧବୀ : (ଅନ୍ତରାଳକୁ ଲକ୍ଷ୍ୟକରି) ତମ କାଗଜ ଓଜନ ସରିଲା ମଧୁ ?

ମଧୁ : (ଅନ୍ତରାଳରୁ) ହଁ ମା' ସରିଲା । (ହାତରେ ଖଣ୍ଡେ ଚିଠା ଧରି ବାରଣ୍ଡାକୁ ଆସିବ ।)

ମାଧବୀ : କେତେ ଓଜନ ହେଲା ?

ମଧୁ : (ଚିଠା ଦେଖେଇ) ଖବର କାଗଜ ଅଠକଳେ ଅଢ଼େଇ ପୁରୁଣା ଖାତାପତ୍ର କଲେ ସାତଶ' ।

ମାଧବୀ : ହିସାବ କରିଚ ?

ମଧୁ : ହଁ ମା' ।

(ଏତିକିବେଳେ ଭିକାରୁଣୀ ବେଶରେ ଶୋଭା ଓ କୁନୀ ଆସିବେ ।)

ମାଧବୀ : (ଏମାନଙ୍କୁ ଲକ୍ଷ୍ୟକରି) ଭିକ ?

ଶୋଭା : ହଁ, ମା' ।

ମାଧବୀ : ଏଇ ସେପାଖକୁ ବୁଲିଯାଅ । (ଶୋଭା ଓ କୁନୀ ଫେରିଯାଉଥିଲେ) ଆସ, ରୁହ ରୁହ ।

(ଏମାନେ ଅଟକିଲେ । ଏତିକିବେଳେ ଘର ଭିତରୁ ଟେଲିଫୋନ୍ ଶବ୍ଦ ଶୁଭିଲା)

ମାଧବୀ : ଟେଲିଫୋନ୍ ଆସିଲାଣି—ତମେ ଟିକେ ରୁହ ମଧୁ ।

(ମାଧବୀ ଭିତରକୁ ଗଲେ । ଗେଟ୍ ପାଖରୁ ଗାଡ଼ିହର୍ଣ୍ଣ ଶୁଭିଲା)

ମଧୁ : ଏଇ ବାବୁ ଆସିଲେଣି । ମୁଁ ମୋ କାଗଜପତ୍ର ବନ୍ଧାବନ୍ଧ କରେ ।
(ମଧୁ ଅନ୍ତରାଳକୁ ଚାଲିଗଲା । ଶୋଭ ଓ କୁମୀ ସେଇଠି ଠିଆହୋଇଥାନ୍ତି । ଶୋଭ ବାହାରକୁ ଚାହିଁ ସେମିତ ଚଞ୍ଚଳ ହୋଇପଡ଼ିଲା)

ଶୋଭ : କୁମୀ, ତୁ ଆ' ଏପାଖକୁ—ତାଙ୍କ ବାବୁ କିଏ ଆଇଲେଣି । ଆମକୁ ଏଠି ଦେଖି କାଳେ ଖାଲିମାଲି କରିବେ । ତୁ ଆ' ଏପାଖକୁ ।
(ଶୋଭ ଓ କୁମୀ ଅନ୍ତରାଳକୁ ଚାଲିଗଲେ । ଟିକିଏ ପରେ ମଦନ ଓ ଅନନ୍ତ ଆସିଲେ । ଦୁହିଁଙ୍କର ପରିଚ୍ଛନ୍ନ ବେଶପୋଷାକ—ହସ ହସ ପ୍ରସନ୍ନ ମୁହଁ । ଅନ୍ତରାଳରୁ କଥା କହି କହି ଆସୁଥାନ୍ତି ।)

ମଦନ : ଏ ବର୍ଷ ଫିଲ୍ମ ଆଓ୍ୱାର୍ଡରେ ଶୋଭ ଫିଲ୍ମ ଶ୍ରେଷ୍ଠ ଚଳଚ୍ଚିତ୍ର ଭାବରେ ପୁରସ୍କାର ପାଇବ—ଏ କଥା ମୁଁ ଜାଣିଥିଲି । କିନ୍ତୁ ଶ୍ରେଷ୍ଠ ଗଳ୍ପପାଇଁ ମୁଁ ପୁରସ୍କାର ପାଇବି ଏ ଧାରଣା ମୋର ନଥିଲା ।

ଅନନ୍ତ : ତୋର ମନେଥିବ—ଶୋଭ ଫିଲ୍ମ ଚିତ୍ରନାଟ୍ୟ ପଢ଼ି ମୁଁ କହିଥିଲି ଏ ପୁରସ୍କାର ତୁ ପାଇବୁ ।···ଏତେ ପାଓ୍ୱାରଫୁଲ୍ ଷ୍ଟୋରି !

ମଦନ : ଅବଶ୍ୟ ଅନେକ ପ୍ରଡ୍ୟୁସର୍ ମତେ ଏ କଥା କହୁଥିଲେ ।

ଅନନ୍ତ : ତୋ ଲେଖା ଆଓ୍ୱାର୍ଡ ପାଇବ ଏଥିରେ ଆଶ୍ଚର୍ଯ୍ୟ କିଛି କହିବାର ନାହିଁ । ବଡ଼କଥା ହେଲା ଏ ଫିଲ୍ମ ହିଟ୍ କରିଛି । ଏବେ ତ ତୁ ଗଳ୍ପ, କବିତା, ନାଟକ, ଫିଲ୍ମ ସବୁ ଲେଖିଚାଲିଛୁ । କିନ୍ତୁ ଗୋଟାଏ କଥା ତୁ ଜାଣିରଖ, ତୁ ଯଦି ଶୋଭ ନାଟକ ଲେଖି ନଥାନ୍ତୁ, ଏ ଲାଇନ୍‌କୁ ଏତେ ଚମତ୍କାରଭାବେ ବ୍ରାଇଟ୍ ଆଉଟ୍ କରିପାରିନଥାନ୍ତୁ ।

ମଦନ : (ସମ୍ମୋହିତ ହେଲାପରି) ହୁଁ···ଶୋଭ ନାଟକ ! ଏ ରେୟାର୍ ଏକ୍ସପେରିଏନ୍ସ । ଏ ନାଟକ ଲେଖି ମୁଁ ଯେଉଁ ସନ୍ତୋଷ, ଯେଉଁ ଆନନ୍ଦ ପାଇଛି !! (ଅନ୍ତରାଳକୁ ଚାହିଁ) ଆରେ, ଏସବୁ ପୁରୁଣା କାଗଜ ଖାତା ପତ୍ର···

ଅନନ୍ତ : କାଗଜବାଲା ପୁରୁଣା କାଗଜପତ୍ର ସବୁ କିଣୁଛି । ବୋଧହୁଏ ମାଧବାର ଘରକରଣା···

ମଦନ : (ହସି) ଓ…(ଚାଉଳବାଲାକୁ ଲକ୍ଷ୍ୟକରି) ଶୁଣ, ଏଇ ଯେ ଖାତାଟା ଆଣିଛନ୍ତି…ନା-ନା, ସେ ଆଉ ଖାତାଟା—ହଁ, ଆଣ । (ଚାଉଳବାଲା ଖାତାଟି ଦେଇ ଫେରିଗଲା)

ଅନନ୍ତ : କ'ଣ…କି ଖାତା ?

ମଦନ : (ଖାତା ଦେଉଥାଏ) ଶୋକ ନାଟକର ପାଣ୍ଡୁଲିପି ।

ଅନନ୍ତ : କହୁଛ ଛାପା ହୋଇଛି—ପାଣ୍ଡୁଲିପି ରଖିଛ କାହିଁକି ? ମାଧବୀ ପତ୍‌କା ଚନ୍ଦ୍ରଣୀ—ପୂର୍ବଧାରେ ମୋଟାଏ ଦନର ସ୍ୱ ସ୍ଲିପ୍ ବାନ୍ଧିଛା…

(ବୁଢ଼ୀଙ୍କର ହସ । ମଦନ ପାଣ୍ଡୁଲିପିର ପୃଷ୍ଠା ଓଲଟାଇ ଦେଉଥାଏ)

ମଦନ : ଏଇ ସିକୁଏନ୍‌ସଟା…ଯେତେବେଳେ ଶୋକର ସ୍ୱର ଉଠେଶ ତାକୁ ଛାଡ଼ି ସ୍ୱବଧାହତ—ଶୋକର ଏଇ କେତେପଦ ଡାଏଲଗ୍ (ଟିକଏ ରହି ରହି ଅବୃତ୍ତି କରି) "ଯାଉ…ମୋ କଥା ଶୁଣିବୁ ନାହିଁ ?…ମତେ ଆଉ କିଛି କହିବୁ ନାହିଁ ?…କିଛି ?…ଏ ଯିବା ଆସିବା ବେଳରେ ମୋ ମୁହଁକୁ ଥରେ ଚାହିଁବୁ ନାହିଁ !…ହଉ" ।

(ମଦନ କଣ୍ଠଟା ବିଚଳିତ ହୋଇପଡ଼ୁଛି)

ଅନନ୍ତ : ମଦନ !!

ମଦନ : ଏଁ !…ହଁ, ମୁଁ ମାନୁଛି ଏଇ ନାଟକ ଲେଖିବାବେଳେ ମୁଁ କହିବି… ମାନେ ମୁଁ ଯେ ଏ ଲେଖାରେ କେବଳ ପୁରାପୁରି ଇନ୍‌ଭଲଭଡ୍ ହୋଇ ଯାଇଥିଲି, ତା' ନୁହେଁ—ତା'ଠୁ କିଛି ଅଧିକ, କିଛି ଭିନ୍ନ…

ଅନନ୍ତ : ଜାଣେ । ଠିକ୍ ଏଇ କାରଣଟା ଅନେକ ଯେତେବେଳେ ସମସ୍ତେ ଅନୁଭବ କରିପାରିଛନ୍ତି । ସେଦିନ ନାଟକ ଦେଖିସାରି ମାଧବୀ କହୁଥିଲା— "ବୁଝିହୁଏନା ଶୋକ ଏକ କାଳ୍ପନିକ ଚରିତ୍ର କି ପ୍ରକୃତ ଜୀବନ୍ତ ଚରିତ୍ର !"

ମଦନ : ଜୀବନ୍ତ !

ଅନନ୍ତ : ହଁ ।

ମଦନ : (ଟିକଏ ରହି) ସତ ଜୀବନ୍ତ ହୋଇଥାଏ…

ଅନନ୍ତ : ମୁଁ ମିନ୍, ତୁ ଯଦି ପ୍ରକୃତରେ ଗୋଟିଏ ଭିକାରୁଣୀ ଝିଅକୁ ଦେଖି ବା ତାକୁ ଆଖି ଆଗରେ ରଖି ଏ ନାଟକ ଲେଖିଥାଉ···

ମଦନ : ଧରନେ, ଯଦି ତାହାହିଁ ହୋଇଥାଏ···

ଅନନ୍ତ : ତୋର ବାହାଦୁରି ତ ସେଇଠି । ଶୋଷ ଯଦି ଗୋଟାଏ ନିଛକ କଳ୍ପନା ହୋଇଥାଆନ୍ତା, ତେବେ ଜଣେ ଲେଖକର କଳ୍ପନାର ଇନ୍ଦ୍ରଜାଲ ବୁଣି ତୁ ତୋ ମନଇଚ୍ଛା ତାକୁ ଗଢ଼ିଥାନ୍ତୁ । ମାତ୍ର ଗୋଟାଏ ଜୀବନ୍ତବସ୍ତୁର ଠିକ୍ ସେଇ ବାସ୍ତବ ଜୀବନ୍ତରୂପ ଦେଇ, ତୁ ତାକୁ କଳା ରାଜ୍ୟରେ ପ୍ରତିଷ୍ଠିତ କରିପାରିଛୁ—ଏଇଟା ଅଧୌ ସହଜ କଥା ନୁହେଁ । ସେଇଥିପାଇଁ ତ ସାର୍ ଅଟେନ୍ ବରୋ ତାଙ୍କର ଗାନ୍ଧି ଚଳଚ୍ଚିତ୍ର କରିବାପାଇଁ ତାଙ୍କୁ କୋଡ଼ିଏ ବର୍ଷ ଲାଗିଗଲା । କାରଣ ସେ ବୁଝିଥିଲେ ଗାନ୍ଧିଙ୍କର ଏକ ବାସ୍ତବ ପ୍ରତିଛବି । ଗାନ୍ଧି ଏକ କାଳ୍ପନିକ ଚରିତ୍ର ହୋଇଥିଲେ ହୁଏତ ସେ ବର୍ଷେ ଦି'ବର୍ଷ ଭିତରେ ଛବି ଶେଷ କରିପାରିଥାନ୍ତେ ।

ମଦନ : (ଟିକିଏ ପଦଚାଳନ କରି) ହୁଁ, ମୋର ମନେପଡ଼ିଯାଉଛି ଦୈନିକ ପତ୍ରିକାରେ ସେଇ ଫଟୋଚିତ୍ର କଥା ··

ଅନନ୍ତ : କେଉଁ ଫଟୋ ?

ମଦନ : ବମ୍ବେ ସହରରେ ଅଛିଲ । ଅଶୀବର୍ଷର ଜଣେ କଙ୍କାଳସାର ଭିକାରି—ପାଖରେ ଅଠରବର୍ଷ ବୟସର ବିଚିତ୍ରବେଶୀ ଏକ ଅସୁସ୍ଥ ଯୁବତୀ ଝିଅ । ଦୁହେଁ ଦେହକୁ ଦେହ ଲଗାଇ, ପାପୁଲିକୁ ପାପୁଲି ଯୋଡ଼ି ଭିକ ମାଗୁଛନ୍ତି । ଫଟୋଗ୍ରାଫର୍ ରଘୁରାୟ ତାଙ୍କ କାମେରାର ଯାଦୁବଳରେ ଏଇ ଦୃଶ୍ୟଟି ତୋଳି ଧରିଲେ । ଦେଶ ବିଦେଶରେ ଛବିଟାର କି ପ୍ରଶଂସା—କି ରେଭ୍ ଅପ୍ରିସିଏସନ୍—କେତେ ମୂଲ୍ୟବାନ୍ ପୁରସ୍କାର ରଘୁରାୟ ଏଥିପାଇଁ ପାଇଛନ୍ତି !!

ଅନନ୍ତ : ଆଉ ସେ ଭିକାରି ଦୁଇଜଣ ! କେହି ତାଙ୍କ ଖବର ରଖିନଥିବେ । ସାମାନ୍ୟ କିଛି ଭିକ୍ଷାରେ ସେ ଦୁହେଁ ସନ୍ତୁଷ୍ଟ ହୋଇଥିବେ । ଏହାହିଁ ହୋଇଥାଏ ମଦନ—ଏଇଟା ଗୋଟେ ପ୍ରସେସ୍—ଗୋଟାଏ ସିଷ୍ଟମ୍—

ଗୋଟାଏ ଧାର—ଗୋଟାଏ ସ୍ରୋତ । ବାଳିଘଣ୍ଟର ଉଚ୍ଚ ଅଣ୍ଟବଦଳ, କିନ୍ତୁ ବାଳିଘଣ୍ଟର ଖ୍ୟ ଓ ଢେଙ୍କାନାଳ ସୀମା ଟପିପାରିବ ନାହିଁ ।

ମଦନ : ତୁ ଠିକ୍ କହୁଚ୍ ଅନନ୍ତ । ଏଇଟା ଗୋଟେ ପ୍ରସେସ୍—ଗୋଟାଏ ଧାର । ମାନସିଂହଙ୍କ କୋଣାର୍କ ଜାଗରଣ କାବ୍ୟରେ ମନ୍ଦିର ବକ୍ଷରୁ ପଥରର ନାରୀ ମୂର୍ତ୍ତି ସବୁ ଲାଞ୍ଛି ଛୁଟି ଚାଲିଲେ ଓହ୍ଲାଇ ଅସିଲେ—କିନ୍ତୁ ଧରମା ଅଛି ବସି ମହାରଣା ସେଇ ଅସ୍ତାଚଳରେ ଜଳ ନେଇଗଲେ ।

(କଥା କହିବା ଅବସରରେ ମଦନ ଶୋଷ ନାଟକ ପାଣ୍ଡୁଲିପିର ପୃଷ୍ଠା ଓଲଟାଉଥାଏ ।)

ଅନନ୍ତ : (ସ୍ମିତ ହସି) ତ'ଣ—ପାଣ୍ଡୁଲିପି ହସ୍ତରୁ ସମସ୍ତା ଶୁଝି ପାରୁନୁ ? ବେଶ୍ତ, ତୋ ପାଖରେ ଥାଉ ଏଇଟା ।

ମଦନ : ନା-ନା, ମୋର ସେ ଦୁର୍ବଳତା ନାହିଁ । (ଅନ୍ତସ୍ଥଳକୁ ଲକ୍ଷ୍ୟକରି) ଏଇ ନିଅ ତମର ଖାତା । (ଖାତାଟା ଭିତରକୁ ପକେଇଦେଲ)

(ମାଧବୀ ଆସିଲ ।)

ଅନନ୍ତ : ଶୁଣ୍ ମାଧବୀ, ଟ୍ରେଞ୍ଜର । ଆଜ କମ୍ପେନୁ ଟେଲିଫୋନ ପାଇଲି, ଏଇ ଏକୋଇଶ ତାରିଖରେ ଶୋଷ ହିନ୍ଦୀ ଫିଲ୍ମର ମହୂରତ କଟକରେ ହବ—ସେମାନେ ଏଠିକି ଆସିବେ ।

ମାଧବୀ : ସେକଥା ଅନୁଭବ ତମେ ଜାଣ । ଶୋଷ ଫିଲ୍ମ ଓଡ଼ିଆରେ ହେବ—ଏବେ ହିନ୍ଦୀରେ ହେବ । (ସ୍ମିତହସି) ମୁଁ ଖାଲି ଶୁଣୁଛି କମ୍ପେ ହିନ୍ଦୀ ଫିଲ୍ମ ହେଉଥା କଥା ।

ଅନନ୍ତ : ସେ କଥା ବ ମୁଁ ଜାଣେ । ସେଇଥି ପାଇଁ ତ ମୁଁ ଫିଲ୍ମର କୋ-ପ୍ରଡ଼ୁ୍ୟସର ହେଲି । ତା'ଛଡ଼ା ଅମୋଲ୍ ପାଲେକର, ଗିରିଶ୍ କର୍ଣ୍ଣାଡ, ଏମାନେ ସେତେବେଳେ ଅଛନ୍ତି, ଚିନ୍ତା କରିବାର କିଛି ନାହିଁ ।

ମାଧବୀ : (ଭଣ ହିରେ କିବ) ଏଇ ଏକୋଇଶ ତାରିଖ ! ଏକୋଇଶ ତାରିଖରେ ମହୂରତ ହେବ ?

ଅନନ୍ତ : ବାପିଙ୍କ—କ'ଣ ହେବ ?

ମାଧବୀ : କହୁ ଜାଣିପାରୁନ ?

ଅନନ୍ତ : (ରହି ରହି) ନାଁ ତ !

ମାଧବୀ : (ହିଠେ ଲଜେଇଯାଇ) ଭାଙ୍ଗ ପଶୁର ।

ଅନନ୍ତ : କ'ଣରେ ମଦନ ?

ମଦନ : (ହଠ ହଠ ମୂର୍ଚ୍ଛରେ) ଫେବୃଆ'ରି ଏକୋଇଶ ତାରିଖ…

ଅନନ୍ତ : (ହସିବରେ ହସିଉଠି) ଓହୋ ! ତମ ବିବାହ ବାର୍ଷିକୀ—ଶୁଭ ତିଥି—ଆନିଭର୍ସାରି…ହାଓ ଗ୍ରେଟ୍ ! (ସମସ୍ତଙ୍କର ହସ) ହଉ ମୁଁ ଯାଉଛି ।

ମାଧବୀ : କେତେଟା ବାଜିଲଣି ?

ମଦନ : ସାଢ଼େ ଏଗାର ।

ମାଧବୀ : କିଛିଏ ଦୁଧ ଅନୁଛଇ, ଏଇଠି ଖାଇକରି ଯିବ ।

ଅନନ୍ତ : ନାହିଁ ନାହିଁ । ତମ ଗାଡ଼ି ଗ୍ୟାରେଜ୍ ରେ—ମୁଁ ମଦନକୁ ଛାଡ଼ିବାପାଇଁ ଆସିଥିଲି— ଯାଉଛି । ସବୁ ଖାଇବା ପିଇବା ସେଇ ଏକୋଇଶ୍ ତାରିଖରେ ।

(ସମସ୍ତଙ୍କର ହସ—ଅନନ୍ତ ବାହାରିଲେ)

ମଦନ : ଆସ ।

ମାଧବୀ : ତମେ ବସ, ମୁଁ ଯାଉଛି । (ମଦନ ବାହାରିଲେ) ମଧୁ ତମ ହିସାବ…

ମଧୁ : (ହାତରେ ଖଣ୍ଡେ କାଗଜ ଧରି ଆସିକି) ହିସାବ ହେବ ମା'—ଖବର କାଗଜ ଅଠକାଳେ ଆଉ ପୁରୁଣା ଖାତାପତ୍ର ଜଲେ ଯାଉଣି । ଏଇ ମା' ଟଙ୍କା ।

(କାଗଜବାଲା ମାଧବୀ ହାତକୁ ଟଙ୍କା ଦେଲା । ମାଧବୀ ମନେ ମନେ ହିସାବ କରୁଥାଏ ।)

ମାଧବୀ : ବାଙ୍କି ପଇସା ?

ମଧୁ : ରେଜାପଇସା କେଇଟା ତ ମା' ।

ମାଧବୀ : ନା ନା, ତମେ କ'ଣ ନୂଆ ହେଉଛ ?

ମଧୁ : ମୁଁ କ'ଣ ଜାଣିନାହିଁ ମା' ! ଆପଣଙ୍କର ସାସ୍ତ କଥା—ଠିକ୍ ଓଜନ—ଠିକ୍ ପଇସା । ଆପଣଙ୍କ ଙ୍ଅନ୍ତରୁ ସେଇ ବାଙ୍ଗ୍ଲାବାଦ ଘରୁ ମୁଁ କାଗଜ ନଇଚ । କେତେ ଝୁପିର ଭଆ, ବାହାହେଇ ଏ ନଇକୂଳ ଢୋଠାରେ ଅସି ରହୁଚେ । (ପଇସା ବାହାରକରି) ଏଇ ନଅନ୍ତୁ ମା' ।

(ଏତକବେଳେ କୁମୀ ଓ ଶୋଷ ଅସିଲେ)

ମାଧବୀ : ଓ ହେ୍ା···ଭିକ ନେଇନ ପଗ ?

(ଦେଖାଗଲା ମାଧବୀର ଦୃଷ୍ଟି ସେମିତ ଅପେ ଅପେ ପ୍ରହାରତ ହେଇ ଶୋଷ ମୁହଁ ଉପରେ କାହ୍ନଷଂପାଇଁ ନବଦ୍ଧ ହେଇ ରହିଳା । ଶୋଷର ଏଥିକି ଲକ୍ଷ୍ୟ ନାହିଁ ।)

କୁମୀ : ମା, ଭିକ ।

ମାଧବୀ : ଏଁ ! ହିଁ···ମଧୁ, ସେତକ ପଇସା ଏମାନଙ୍କୁ ଦେଇଦଅ ।

(ଶୋଷ ଉପରେ ଅଉ ଥରେ ଦୃଷ୍ଟିପାତ କରି ମାଧବୀ ଭିତରକୁ ଚାଲିଗଲା ।)

ଶୋଷ : ହେ ସାଇ !

ମଧୁ : କ'ଣ କଲେ ?

ଶୋଷ : ଏଇ ଯୋଉ ବାବୁ ଉପରକୁ ଗଲେ, ସିଏ କ'ଣ ଏ ମାଆଙ୍କ ବର ?

ମଧୁ : (କଥାରେ ଉପହାସ ଆଣି) ଆଉ କ'ଣ···(ଟିକିଏ ଅଟକିଯାଇ) କ'ଣ ମୁଁ ତତେ କହିବଟି ! ଭୂତ ପତର ଗୋଟେଇ ଅସିଚୁ, ତୋଟା ମୂଲ କରୁଚୁ ଜାଣିନୁ ? ହିଁ, ସେ ବାବୁ ଅମ ଏ ମା'ଙ୍କ ବର । ଏଇ ନେ ତୋ ପଇସା । (ଶୋଷକୁ ପଇସା ଧରେଇଦେଲା)

ଶୋଷ : (ଅଧୀର ଉତ୍କଣ୍ଠାରେ) ପଇସା !

ମଧୁ : ଅରେ ମୁଁ ଦଇନାହିଁ—ମା'ଙ୍କ କାଗଜବିକା ପଇସା—ତତେ ଦବାପାଇଁ ମା' କହିଗଲେ । (ମଧୁର ପ୍ରସ୍ଥାନ)

କୁମୀ : ଗୋଟାଏ ନୁଆଁଣିଆ ଚୁଲଘରେ ରହୁଥିଲା । ଏଇନେ ଦେଖ୍ କେଡ଼େବଡ଼ କୋଠା—କେମିତ ବେଶପୋଷାକ ।

ଶୋଷ : (ମୁହଁ ଅତି ସ୍ୱପ୍ନୋଜ୍ଜ୍ୱଳିତ ହୋଇଉଠିଛି) ଏତେ ଭଲ···ଏତେ ଭଲ ମଣିଷ ··(ଶୋଷର ମୁହଁ ଉଜ୍ଜ୍ୱଳ ହୋଇ ଉଠୁଛି) ମୁଁ ତା' ଭଲପାଇଁ ଠାକୁରଙ୍କୁ ଡାକଥିଲି । ଠାକୁରେ ମୋ ଡାକ ଶୁଣିଚନ୍ତି ।

କୁମୀ : ଏଇ ଦେଖ୍ ଦେଖ୍, ସେ ପାର୍ଶ୍ୱରେ ବୁଢାର ପିଲାଟାଏ ଯାଉଛି— ଡାକିବି ତାକୁ ?

ଶୋଷ : କାହିଁକି ?

କୁମୀ : ବାବୁ ପାଖକୁ ଖବର ଦବୁ ।

ଶୋଷ : କି ଖବର ?

କୁମୀ : ବାବୁ ଆସିବ···ତା' ସାଙ୍ଗରେ କଥାବାର୍ତ୍ତା ହବୁ ।

ଶୋଷ : (ସ୍ୱପ୍ନାଚ୍ଛନ୍ନ) ଏତେ ଭଲ ମଣିଷ···

କୁମୀ : ସେଇ କଥା ତ ମୁଁ କହୁଛି···ବାବୁ ପାଖକୁ ଖବର ଦେ' ।

ଶୋଷ : ନାଇଁ ।

କୁମୀ : କାହିଁକି ?

ଶୋଷ : କାହିଁ କେତେଦିନ ହେଲାଣି ତାକୁ ଭେଟିଥିଲି । ମୋ କଥାସବୁ ସେ ତ ଖାତାରେ ଲେଖିଥିଲା ତାକୁ ବଳଦେଲାଣି । ଆଉ କ'ଣ ଚିହ୍ନିବ ?

କୁମୀ : (ତେଜହଠି) ଜାଣିଥିଲୁ ଯଦି ସିଏ ତତେ ଚିହ୍ନିବ ନାହିଁ ସେତେ-ବେଳେ ଏମିତ ଦୁଃଖ ଅବସ୍ଥା ହେଲୁ କାହିଁକି ? ଦିନ ନାହିଁ, ରାତି ନାହିଁ, ତାକୁ ପାଗଳ ପରି ଖୋଜି ବୁଲୁଥିଲୁ କାହିଁକି ?

ଶୋଷ : (ଜଣେ ବୁଢ଼ ହୋଇ ଆସୁଛି) କୁମୀ···

କୁମୀ (କାନ୍ଦକାନ୍ଦ) କହୁନୁ ମତେ, ହେକ ଉପାସରେ ରହି, ବୋଉଠୁ ମାଡ଼ଗାଳି ଖାଇ, କାହିଁକି ତା'କୁ ଖୋଜିବୁଲୁଥିଲୁ ? କାହିଁକି ?

ଶୋଷ : (ସ୍ୱର୍ଣ୍ଣପତ୍ର) ମୁଁ ଜାଣିନାହିଁ ଲୋ କୁମୀ, କାହିଁକି ତାକୁ ଖୋଜି ବୁଲୁଥିଲି ମୁଁ ଜାଣିନାହିଁ ।

(ଦୁହେଁ ବାହାରକୁ ଚାଲିଗଲେ)

---

# ଗୋପାଳ ଛୋଟରାୟଙ୍କ ଅନ୍ୟ ରଚନା

ନାଟକ :

ଫେରିଆ
ସାଧନା
ଘୁରିମୁରି ପାରିବାରିକ—୧ମ ଖଣ୍ଡ
ଘୁରିମୁରି ପାରିବାରିକ—୨ୟ ଖଣ୍ଡ
ଭରସା
ଜଳଦେବଦେବୀ
ପରଭଲମ
ହାସ୍ୟରସର ନାଟକ
ଅର୍ଦ୍ଧାଙ୍ଗିନୀ
ଅମଡ଼ାବାଟ
ଘଟକ
ଝଞ୍ଜା
ଶଙ୍ଖାସିନ୍ଦୂର
ମନ୍ୱନ୍ତର
ପଥଚବନ୍ଧ
ପ୍ରଚଣ୍ଡ
ନଷ୍ଟହଙ୍କଣୀ
ଅଗ୍ନିରିନାର ପୂର୍ବ
ନୂଆବୋହୂ
ଶାଖାପ୍ରଶାଖା

ପଦ୍ମାଳୟ
ଶ୍ରୀହରିଙ୍କ ସଂସାର
ସହଧର୍ମିଣୀ
ଶତରଂଜ
ବୋକା ରଜା-ବୋକା ମନ୍ତ୍ରୀ
(ଶିଶୁ ନାଟକ)

ଗୀତିନାଟ୍ୟ :

ସଂପୂର୍ଣ୍ଣ ରାମାୟଣ
ଗଣେଶ
ମହିଷମର୍ଦ୍ଦିନୀ
ଜନ୍ମାଷ୍ଟମୀ
ନପାହୁରତ
ବୋଲେ ହୁଁ ହି
ଶ୍ରୀମଞ୍ଚ ଦର୍ପଭଞ୍ଜନୀ
ମୀରାବାଈ
ଶ୍ରୀ ଜଗନ୍ନାଥ
ଚନ୍ଦ୍ରସାଗର
ଘରବରଦେଖା
ସୀତା-ଲବକୁଶ
ଚମ୍ପୂ-ବିନୋଦ
ପଞ୍ଚବଟୀ

---